ପାର୍ଲେ

ମେଲଡୀ ସାଦର କରୁଛି **ଡୋନାଲ୍ଡ ଡକ୍**

**ମନ ଲୋଭୁଛି ରାପର୍‌ରେ**

ୱାଃ, ୱାଃ, କେତେ ବଢ଼ିଆ ମେଲଡୀ ଟଫୀ!

ଡେଜୀ ଡିଅର୍, ସମ୍ଭାଳି
ରଖ ସବୁଯାକ ରାପର୍—
ଦଶଟି ବଦଳେ ମିଳେ,
ମାଗଣାରେ ଷ୍ଟିକର।




**ତମ ଅତି ଆପଣାର ଡିସ୍‌ନେ ସାଥୀମାନଙ୍କ ମାଗଣା ଷ୍ଟିକର!**

ପିଲାମାନେ! ତମ ଅତି ଆପଣାର ଡିସ୍‌ନେ ସାଥୀମାନଙ୍କୁ ଏବେ ଏକାଠି କର। ସେମାନେ ସମୁଦାୟ ୩୦ ଜଣ। ପ୍ରତିଟି ଷ୍ଟିକର ପାଇବା ପାଇଁ ତମେ ମେଲଡୀ ଟଫୀ'ର କେବଳ ୧୦ଟି ରାପର୍ ଓ ତା' ସାଥିରେ ୫୫ ପଇସା'ର ଟିକଟ ଲଗା ଲଫାଫାରେ ତମ ନିଜ-ଠିକଣା ଲେଖି ପଠାଅ:
ମେଲଡୀ ଟଫୀ, ପାର୍ଲେ ପ୍ରଡକ୍ଟସ ପ୍ରା.ଲି.
ନର୍ଲନ ହାଉସ, ୨୫୪-ବି, ଡକ୍ଟର ଆନୀ ବେସାନ୍ତ ରୋଡ,
ବମ୍ବେ-୪୦୦ ୦୨୫।

ନବନବିନ ପାର୍ଲେ

# ମେଲଡୀ ଟଫୀ

**କାରାମେଲ୍ ଓ ଚକୋଲେଟ୍'ର ସରସ ମିଳନ**
**ଚ୍ୟୁଙ୍କ୍...ଚ୍ୟୁଙ୍କ୍ ଖାଇବାକୁ ମନ ଛନଛନା**

# ରାଜୁ ତା କ୍ଲାସ୍‌ରେ ସବୁଠୁ ବେଶି ଚମତ୍କାର ଡାକଟିକଟ ଏକଜୁଟ କରିଛି

ତାର ସଂଗ୍ରହ କରିଥିବା ଡାକଟିକଟ ଯେତେ ବେଳେ ତାର ସାଙ୍ଗ ମାନେ ଦେଖନ୍ତି ସେତେ ବେଳେ ସେମାନେ ଅହଂକାରରେ ଜଳି ଉଠନ୍ତି । ତାର ଜାହାଜ, ଶୂନ୍ୟ ଆକାଶ, ଖେଳ ଖେଳାଳିର ଡାକଟିକଟ ... ଏବଂ ତାଠୁଁ ଅଧିକା ଅଛି ।

ଇସ୍ ...... ତାର ଭେଦ ପଦାରେ ପଡ଼ିଗଲା !

ରାଜୁର ରୁଷିଆରୁ ଜଣେ ବନ୍ଧୁ ଅଛି ଯେକି ଡାକଟିକଟ ସଂଗ୍ରହ ବିଷୟରେ ସବୁ ଜାଣେ । ସେ ରାଜୁର ଡାକଟିକଟ ସଂଗ୍ରହରେ ସାହାଯ୍ୟ କରେ ।

## ତୁମ୍ଭେ ମଧ୍ୟ ଯୋଇସ୍କାର ବନ୍ଧୁ ହୋଇପାରିବ ଏବଂ ଡାକଟିକଟ ସଂଗ୍ରହ କରିବା ଆରମ୍ଭ କରି ପାରିବ ।

ରୁସିଆର ଡାକଟିକଟ ମାନ ଭାରି ସୁନ୍ଦର—ଏବଂ ସେଥିରେ ଅନେକ ବିଷୟବସ୍ତୁ ଉପରେ ସୁନ୍ଦର ରଙ୍ଗିନ ଛବି ଥାଏ ।

ସେଗୁଡିକ ତୁମର ଡାକଟିକଟ ସଂଗ୍ରହ କରିବାରେ ଆନନ୍ଦ ଓ ଉତ୍ସାହ ଆଣି ଦେବ, ଏବଂ ସେଥିରୁ ତୁମ୍ଭେ ଅନେକ କଥା ଶିଖିବ—କେବଳ ଏତିକି ନୁହଁ—ଅନେକ ହିସାବରେ ଏ ମଧ୍ୟ ଫଳପ୍ରଦ ହେବ ।

## ବର୍ତ୍ତମାନଠୁଁ ସଂଗ୍ରହ କରିବା ଆରମ୍ଭ କର—

୧. ନିମ୍ନଲିଖିତ ବିଷୟବସ୍ତୁ ମାନଙ୍କରୁ ତୁମର ପସନ୍ଦ ବାଛ :-

- ଶୂନ୍ୟ ଆକାଶ (ସ୍ପେସ୍) • ଖେଳ ଖେଳାଡ଼ି ଏବଂ ଯାତ୍ରୀ ସଂବନ୍ଧିୟ
- ଫୁଲ • ପଶୁପକ୍ଷୀ • କଳାଚିତ୍ର • ଜଳଜୀବ ଓ ଉଦ୍ଭିଦ
- ଯାନବାହାନ (ରେଳ, ଉଡ଼ାଜାହାଜ, ଜାହାଜ ଏବଂ ମଟରଗାଡ଼ି)
- ମହାନ୍ ଅକ୍ଟୋବର ବିପ୍ଳବ • କମ୍ୟୁନିଷ୍ଟ ପାର୍ଟି • ଲେନିନ୍
- ସବୁରକମର ମିଶ୍ରିତ ଡାକଟିକଟ ।

୨. ବର୍ତ୍ତମାନ ଆମର ଏହ ବଢ଼ିଆ ଅବଦାନକୁ ବିଚାର କର —ତୁମ୍ଭେ କେବଳ ମୂଲ୍ୟ ଅନୁସାରେ ଡାକଟିକଟ ପାଇବ ନାହିଁ, ପରନ୍ତୁ ତା ସହିତ ଅନେକ ଆଶାତିତ ଉପହାର ଯୋଇସା ଠାରୁ ପାଇବ ।

ତା ସାଙ୍ଗକୁ ତୁମ୍ଭେ ବିନାମୂଲ୍ୟରେ ପାଇବ ଗୋଟିଏ ରଙ୍ଗବିରଙ୍ଗି ବହି ଟିକଟ ବିଷୟରେ, ପୂରା ମୂଲ୍ୟ ସୂଚି, ଆଲବମ୍, ନୂଆ ବାହାରି ଥିବା ଟିକଟ, ପ୍ରଥମ ଦିନ ବଣ୍ଟା ଯାଇଥିବା ଲଫାପା ଏବଂ ନୂଆ ଓ ପୁରୁଣା ଡାକଟିକଟମାନ ।

୩. ବର୍ତ୍ତମାନ ବିଚାର କର କେତେ ଶୀଘ୍ର ତୁମର ଡାକଟିକଟ ସଂଗ୍ରହ କରିବ ଏବଂ ନିମ୍ନଲିଖିତ ସଙ୍କଳନରୁ ତୁମର ପସନ୍ଦ ବାଛ :—

| | ସଙ୍କଳନ ଦାମ୍ | ତୁମର ପ୍ରାପ୍ୟ | ତୁମର ପସନ୍ଦ |
|---|---|---|---|
| A | ଟ· ୨୫/- | ୫୦ ଟିକଟରୁ ଅଧିକ | ଏକ ବା ଅଧିକ ବିଷୟବସ୍ତୁ ଉପରେ |
| B | ଟ. ୫୦/- | ୧୦୦ ଟିକଟରୁ ଅଧିକ | ଏକ ବା ଅଧିକ ବିଷୟବସ୍ତୁ ଉପରେ |
| C | ଟ· ୧୦୦/- | ୨୦୦ ଟିକଟରୁ ଅଧିକ | ଅତିକମରେ ୩ଟି ବିଷୟବସ୍ତୁ ଉପରେ |
| D | ଟ· ୨୦୦/- | ୪୦୦ ଟିକଟରୁ ଅଧିକ | ଅତିକମରେ ୫ଟି ବିଷୟବସ୍ତୁ ଉପରେ |



୪. ତୁମର ପସନ୍ଦ ବାଛିଲା ପରେ ଚିନାର ଏକ୍ସପୋର୍ଟସ କୁ ଲେଖ— (କ) ତୁମର ନାମ (ଖ) ତୁମର ଠିକଣା (ଗ) ଯେଉଁ ବିଷୟବସ୍ତୁ ଗୁଡିକ ତୁମର ପସନ୍ଦ (ଘ) ଯେଉଁ ସଙ୍କଳନ ତୁମର ଦରକାର ।

ଏହା ସହିତ ମନିଅର୍ଡର୍ ବା ପୋଷ୍ଟଲ୍ ଅର୍ଡର ବା ବେଙ୍କ ଡ୍ରାଫଟ ଚିନାର୍ ଏକ୍ସପୋର୍ଟସ ପ୍ରାଇଭେଟ୍ ଲିମିଟେଡ୍, ନୂଆ ଦିଲ୍ଲୀ ନାମରେ ପଠାଅ ।

**CHINAR EXPORTS PVT LTD**
101-A, Surya Kiran, Kasturba Gandhi Marg,
New Delhi-110001. (INDIA)
Phones: 35–2023, 35–2123
• Cable: VILPANA • Telex:-314212

ତୁମ୍ଭେ ନିଶ୍ଚିନ୍ତ ରୁହ ଯେ ତୁମକୁ ଅସିଲି ଟିକଟ ମିଳିବ ଏବଂ ସେଗୁଡିକ ଭଲ ଅବସ୍ଥା ରେ ତୁମର ଅର୍ଡର ପାଇବାର ୨ ସପ୍ତାହ ପରେ ତୁମ ପାଖରେ ପହଞ୍ଚିବ ।

ସୋଭିଏଟ ଡାକଟିକଟ ତୁମ୍ଭେ ମଧ୍ୟ ସମସ୍ତ କଲୋନା କୋଡା ଦୋକାନ ଏବଂ ସୋଭିଏଟ ବହି ଦୋକାନରୁ ପାଇ ପାରିବ ।

Shems/CEPD/83

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗି ରେଡ୍‌ଡୀ

ଏ ସଂଖ୍ୟାର ବେତାଳ କାହାଣୀ ହେଲା "ଅଧିକାର"। ଅଯୋଗ୍ୟ ଲୋକେ କ୍ଷମତା ପାଇଲେ କିପରି ତାହାର ବ୍ୟବହାର କରନ୍ତି, ଗଳ୍ପଟି ତା'ର ଦୃଷ୍ଟାନ୍ତ। ପ୍ରକୃତରେ ଯାହାର ଚେତନା ମହତ୍, ଅଧିକାର ତାହାର ହାତରେ ରହିଲେ ପୃଥିବୀର ମଙ୍ଗଳ ହେବ।

## ଅମରବାଣୀ

ଭୀତଦଃସୁଜନୋପି ସ୍ୟାତ୍, ଯଦି ଦୁର୍ଜନ ସେବିତଃ।
ଫଣିଶ ସ୍ଥାଶ୍ରୟଂ ବୃକ୍ଷଂ, ଚନ୍ଦନ କଃ ସମାଶ୍ରୟେତ୍ ॥

[ଜଣେ ଭଲ ମଣିଷ ହୋଇପାରେ, କିନ୍ତୁ ସେ ଯଦି ଦୁର୍ଜନର ସଂସ୍ରବରେ ଥାଏ, ତେବେ ତାକୁ ଲୋକେ ଭୟ କରିବେ। ଚନ୍ଦନ ଗଛରେ ସାପ ଥାଏ ବୋଲି କେହି ତା' ଛାୟାରେ ବିଶ୍ରାମ କରନ୍ତି ନାହିଁ।]

ବର୍ଷ : ୧୭ ଫେବ୍ରୁଆରି ୧୯୮୪ ଅଙ୍କ : ୮

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



# ଜହ୍ନମାମୁଁ ସମ୍ବାଦ



## ଚଞ୍ଚଳ ଚନ୍ଦ୍ର

ସୌରଜଗତର ଏକ ସଦ୍ୟ ସମ୍ବାଦ ହେଲା : ଆମ ସୁପରିଚିତ ଚନ୍ଦ୍ରଠାରୁ ତିନିଗୁଣ ଅଧିକ କ୍ଷିପ୍ର ଗତିରେ ବୁଲୁଥିବା (ଅର୍ଥାତ୍ ଘଣ୍ଟାକୁ ୭୦,୪୦୦ ମାଇଲ୍) ଚନ୍ଦ୍ରଟିଏ ରହିଛି। ପ୍ରତି ସାତ ଘଣ୍ଟାରେ ଥରେ ସେ ଜୁପିଟର୍ ଗ୍ରହ ଚାରିପଟେ ବୁଲିଆସେ।

## ବାର୍ମୁଡ଼ା ତ୍ରିକୋଣର ରହସ୍ୟ



ପଶ୍ଚିମ ଆଟଲାଣ୍ଟିକ ମହାସାଗରରେ ବାର୍ମୁଡ଼ା ତ୍ରିକୋଣ ନାମକ ଅଞ୍ଚଳ ଭିତର ଦେଇ ଗଲାବେଳେ ଅନେକ ଜାହାଜ ରହସ୍ୟମୟ ଭାବରେ ହଜିଯା'ନ୍ତି। ସେ ଅଞ୍ଚଳର ଆକାଶ ଦେଇ ଉଡ଼ିଯାଉଥିବା କେତେ ବିମାନ ବି ନିଖୋଜ ହୋଇଛନ୍ତି। ଏବେ କାନାଡ଼ାର ଜଣେ ବୈଜ୍ଞାନିକ କହୁଛନ୍ତି କି ଗଲ୍ଫଷ୍ଟ୍ରିମ୍ ଭଳି ଏକପ୍ରକାର ଆକସ୍ମିକ ଢେଉ ଜାହାଜମାନଙ୍କୁ ବୁଡ଼ାଇ ଦିଏ। କିନ୍ତୁ ବିମାନ ସବୁ କୁଆଡ଼େ ହଜି ଯାଉଛନ୍ତି, ସେ କଥା ସେ କହିପାରୁ ନାହାନ୍ତି।

## ଦଂଶନ ଉପଭୋଗ !



ବ୍ରିଟେନ୍‌ର ୟର୍କଶାୟାର୍ ଅଞ୍ଚଳର ଲୋକେ ଗୋଟାଏ ଅଦ୍ଭୁତ ତାମସା କରିଥାନ୍ତି। ଏକ ପ୍ରକାର ବଣୁଆ ବଢ଼େଇ ଅଛନ୍ତି। ସେମାନଙ୍କ ଆଡ଼େ ଗୋଡ଼ ଦେଖାଇ ଠିଆ ହେଲେ ସେମାନେ କାମୁଡ଼ିବେ ଓ ରାମ୍ପୁଡ଼ିବେ। କିଏ କେତେ ସମୟ ସେ କାମୁଡ଼ା ରାମ୍ପୁଡ଼ା ସହି ପାରୁଛି, ସେଥିରେ ପ୍ରତିଯୋଗିତା ହୁଏ। ୭୪ ବର୍ଷ ବୟସ୍କ ରେଗ୍ ମୋଲେର୍ ପାଞ୍ଚଘଣ୍ଟା ୧୬ ମିନିଟ କାଳ ସେ କାମୁଡ଼ା ରାମ୍ପୁଡ଼ା ସହି ନୂଆ ରେକର୍ଡ ସୃଷ୍ଟି କରିଛନ୍ତି।

## ଜାଣନ୍ତି କି ?

୧. ପୃଥିବୀର ପ୍ରାଚୀନତମ ବୃକ୍ଷ କେଉଁଟି ?

୨. ପ୍ରାୟ ଦୁଇହଜାର ବର୍ଷ ତଳେ ଭାରତରୁ ଗୋଟିଏ ଗଛର ବୃନ୍ତ ବିଦେଶ ଯାଇଥିଲା। ତାହା କେଉଁଠାରେ ?

୩. ପୃଥିବୀର ସବୁଠାରୁ ମୋଟା ଗଛ କେଉଁଟି ?

୪. ଆମେ ଦେଖିପାରିବା ଭଳି ଗତିରେ ବଢୁଥିବା ଗଛ କିଏ ?

୫. ସବୁଠୁଁ ଅଧିକ ସ୍ଥାନ ମାଡ଼ି ବସିଥିବା ଗଛ କେଉଁଟି ?

(ଉତ୍ତର ପୃଷ୍ଠା ୬୪ ରୁ ପାଇବେ)



# ହିସାବ ନିକାଶ!

ଜମିଦାର ଆନନ୍ଦରାୟ ବୁଢ଼ା ହୋଇ ଯାଇଥିଲେ । ଦେହ ବି ଭଲ ରହୁ ନଥିଲା । ତାଙ୍କର ଥିଲେ ତିନିପୁଅ ଓ ଗୋଟିଏ ଝିଅ । ତିନିଜଣଯାକ ପୁଅ ବେଶ୍ ଯୋଗ୍ୟ ଥିଲେ । ଝିଅଟି ବି ଥିଲା ବହୁତ ଗୁଣବତୀ । କିନ୍ତୁ ଝିଅଟିର ବିବାହ ସକାଶେ ସେ ବ୍ୟବସ୍ଥା କରି ନଥିବାରୁ ବଡ଼ ଚିନ୍ତିତ ହୋଇ ପଡିଥିଲେ ।

ଦିନେ ସେ ବଡ଼ ପୁଅକୁ ଡାକି କହିଲେ, "ପୁଅ, ମୁଁ ଆଉ ଅଧିକ ଦିନ ବଞ୍ଚିବି ବୋଲି ବିଶ୍ୱାସ କରି ପାରୁନାହିଁ । ଝିଅ କଲ୍ୟାଣୀ ବିଷୟରେ ମୋର ବଡ଼ ଚିନ୍ତା । ଭାବୁଛି ଆମ ସମ୍ପତ୍ତିକୁ ଚାରିଭାଗ କରିଦେବି । ଝିଅ ଭାଗରେ ଯେଉଁ ଅଂଶ ରହିବ, ସେଥିରେ ତା'ର ବିବାହ ହେବ । ତୁ ଏ ବ୍ୟବସ୍ଥା ବିଷୟରେ କ'ଣ ଭାବୁଛୁ ?"

"ବାପା, ଆପଣ ସମ୍ପତ୍ତି ଚାରିଭାଗ କରିବା ଦରକାର ନାହିଁ । ତିନିଭାଗ କରି ଆମ ତିନିଜଣଙ୍କ ଭିତରେ ବାଣ୍ଟି ଦିଅନ୍ତୁ । ଆମେ ତିନିହେଁ ମିଳି ମିଶି କଲ୍ୟାଣୀର ବାହାଘର କ'ଣ ତୁଲାଇ ଦେବା ନାହିଁ ? ଆପଣ କାହିଁକି ଏସବୁ ଚିନ୍ତା କରୁଛନ୍ତି ?" ବଡ଼ପୁଅ କହିଲା ।

"କାହିଁକି ? ଚାରିଭାଗ କଲେ କ୍ଷତି କ'ଣ ? କଲ୍ୟାଣୀ ତ ତମମାନଙ୍କ ଭଳି ମୋର ସନ୍ତାନ ? ତା'କୁ ସମ୍ପତ୍ତିରୁ ଗୋଟିଏ ଭାଗ ଦେବାରେ କ୍ଷତି କ'ଣ ?" ଆନନ୍ଦରାୟ ପଚାରିଲେ ।

ବଡ଼ପୁଅ ବ୍ୟସ୍ତ ହୋଇ କହିଲା, "ବାପା, ମୁଁ ସେ ଦୃଷ୍ଟିରୁ କିଛି କହୁନାହିଁ । କଲ୍ୟାଣୀକୁ କ'ଣ ମୁଁ କମ୍ ସ୍ନେହକରେଁ ବୋଲି ଆପଣ ଭାବୁଛନ୍ତି ? ତାହା ନୁହେଁ । ମୋର କହିବାର

ସମରେନ୍ଦ୍ର



କଥା ହେଲା, ସମାଜରେ ଗୋଟାଏ ପରମ୍ପରା ଅଛି। ପୁଅମାନଙ୍କ ଭିତରେ ସମ୍ପତ୍ତି ସବୁ ଭାଗ କରାହୁଏ। ସେ ପରମ୍ପରା ଭାଙ୍ଗିବା କ'ଣ ଦରକାର? କଲ୍ୟାଣୀ ତ ଭଲ ଘରେ ବିଭା ହୋଇଗଲେ ହେଲା! ଆଉ ଚିନ୍ତା କ'ଣ?"

ଆନନ୍ଦରାୟ କିଛି ସମୟ ମୌନ ରହି କହିଲେ, "ହଁ। ତୁ ଯାହା କହୁଛୁ ତାହା ମନ୍ଦ ନୁହେଁ। ତେବେ ମୁଁ କଲ୍ୟାଣୀର ବିବାହ ବିଷୟରେ ବଡ଼ ଚିନ୍ତିତ। ମୋ ଜୀବଦ୍ଦଶାରେ ତାହା ହୋଇ ପାରିଥିଲେ ଭଲ ହୋଇଥାନ୍ତା। କିନ୍ତୁ କୌଣସି ଉପଯୁକ୍ତ ଘର ବା ଯୋଗ୍ୟ ବର ମୋ ଆଖି ଆଗରେ ନାହାନ୍ତି।"

"ଆପଣ ଅଯଥାରେ ଚିନ୍ତା କରୁଛନ୍ତି। ଆମେ ଠିକ୍ ଭାବରେ ତା' 'ବାହାଘର କରିଦେବୁ। ଆପଣ ସମ୍ପତ୍ତି ତିନିଭାଗ କରି ଦିଅନ୍ତୁ।" ବଡ଼ ପୁଅ କହିଲା।

ବଡ଼ ପୁଅକୁ ବିଦାୟ କରିଦେଇ ଆନନ୍ଦରାୟ ମଝିଆ ପୁଅକୁ ଡାକିଲେ ଓ କହିଲେ, "କଲ୍ୟାଣୀ ବିଷୟରେ ମୁଁ କିଛି କରି ପାରି ନଥିବାରୁ ବଡ଼ ଚିନ୍ତାରେ ଅଛି। ମୋ ମୃତ୍ୟୁ ପରେ କ'ଣ ହେବ ଜାଣେନା। ଭାବୁଛି ସମ୍ପତ୍ତିକୁ ଚାରିଭାଗ କରିଦେବ। ଯେଉଁ ଭାଗଟି କଲ୍ୟାଣୀ ନାମରେ ରହିବ, ସେଥିରେ ଜାକଜମକରେ ତା' ବାହାଘର ହେବ।"

"ବାପା! ଆପଣ ସମ୍ପତ୍ତି ଚାରିଭାଗ ନକରି ପାଞ୍ଚଭାଗ କରି ଦିଅନ୍ତୁ।" ମଝିଆ ପୁଅ କହିଲା।

"କାହିଁକି?"

"ତିନିଭାଗ ଆମେ ତିନିଭାଇ ନେବୁଁ। ଚତୁର୍ଥ ଭାଗ କଲ୍ୟାଣୀର ବିବାହରେ ଖର୍ଚ୍ଚ ହେବ।"

"ପଞ୍ଚମ ଭାଗ କ'ଣ ହେବ?"

"ବାପା! ପଞ୍ଚମ ଭାଗ ସେହି ଭଉଣୀ ସକାଶେ ଗଚ୍ଛିତ ହୋଇ ରହିବ। ଭବିଷ୍ୟତରେ ଯଦି ତା'ର କୌଣସି ଅସୁବିଧା ହେବ, ଭଗବାନ ନ କରନ୍ତୁ, କିନ୍ତୁ ଯଦି ସେ ଅଯୋଗ୍ୟ ସ୍ୱାମୀ ହାତରେ ପଡ଼େ, ତେବେ ନିଜକୁ ଓ ପିଲାପିଲିଙ୍କୁ ଚଳେଇବା ନିମନ୍ତେ ସେ

ଭାଗ ସମ୍ପତ୍ତି ଉପରେ ସେ ନିର୍ଭର କରିବ ।" ମଝିଆ ପୁଅ ବୁଝାଇଦେଲା ।

"ଭଲ କଥା କହିଲୁ । ଆଚ୍ଛା, ଦେଖିବା । ତୁ ଯା । ତୋ ସାନଭାଇଙ୍କୁ ପଠାଇ ଦେ ।" ଆନନ୍ଦରାୟ କହିଲେ ।

କିଛି ସମୟ ପରେ ସାନ ପୁଅ ଆସି ପହଞ୍ଚିଲା । ଆନନ୍ଦରାୟ ବଡ଼ ଓ ମଝିଆ ପୁଅଙ୍କୁ ଯାହା କହିଥିଲେ, ତାଙ୍କୁ ମଧ୍ୟ ସେଇଆ କହିଲେ ଓ ପଚାରିଲେ, "ମୁଁ ଯେଉଁ ବ୍ୟବସ୍ଥା କରିବାକୁ ଯାଉଛି, ସେଥିରେ ତୋର ଆପତ୍ତି ଅଛି ?"

"ବାପା, ଆପଣ କ୍ଷମା କରନ୍ତୁ, ମୋର ଆପଣଙ୍କ ପାଖରେ ଆପତ୍ତି ଅଛି ।" ସାନପୁଅ ଉତ୍ତର ଦେଲା ।

"କାହିଁକି ?" ଆନନ୍ଦରାୟ ସନ୍ଦେହ କରି ପଚାରିଲେ ।

"ବାପା ! ମୃତ୍ୟୁ ବିଧାତା ହାତର କଥା । ଆପଣ ମୋଟେ ନିଜ ମୃତ୍ୟୁ ନିକଟ ହେଲାଣି ବୋଲି ଭାବିବା ଉଚିତ ନୁହେଁ । ଆପଣଙ୍କଠାରୁ ଦେଢ଼ ଗୁଣ ଅଧିକ ବୟସର ଲୋକ ବି ଆମର ଅଞ୍ଚଳରେ ଦଶ କୋଡ଼ିଏ ଅଛନ୍ତି । କଲ୍ୟାଣୀର ବିବାହ ପାଇଁ ଆପଣଙ୍କର ଏତେ ଚିନ୍ତା କି ? ଖାଲି ସମ୍ପତ୍ତି ତା' ଭାଗରେ ରଖିଦେଲେ କ'ଣ ସେ ସମସ୍ୟାର ସମାଧାନ ହେବ ? ସେ କ'ଣ ନିଜେ ସମ୍ପତ୍ତି ବୁଝାବୁଝି କରି ପାରିବ ? ସମ୍ପତ୍ତି ଭାଗ ଭାଗ କରିବା କିଛି ଦରକାର ନାହିଁ । ସମ୍ପତ୍ତି ଯେପରି ଆପଣଙ୍କର, ଆମେ ବି ସେହିପରି ଆପଣଙ୍କ



ସନ୍ତାନ । ସମ୍ପତ୍ତି ଓ ଆମେ ସବୁ ଏକତ୍ର ରହିବୁଁ ।"

ଆନନ୍ଦରାୟଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା ।

"ପୁଅ ! ତୋ କଥାଶୁଣି ମୋତେ ନୂଆ ଜୀବନ ପାଇବା ଭଳି ଲାଗୁଛି । ତେବେ ମୋର ଶାରୀରିକ ଅବସ୍ଥା ତ ଦେଖୁଛୁ । ମୁଁ ଆଉ ବିଶେଷ ଏଣେତେଣେ ଯାଇପାରିବି ନାହିଁ । ବନ୍ଧୁବାନ୍ଧବ ଘରକୁ ନ ଗଲେ କେଉଁଠାରେ ଉପଯୁକ୍ତ ପାତ୍ର ମିଳିବେ, ସେକଥା ଜାଣିବା ସମ୍ଭବପର ନୁହେଁ । କଲ୍ୟାଣୀ ପାଇଁ ମୁଁ ସେ ଦିଗରେ କିଛି ବ୍ୟବସ୍ଥା କରିପାରୁ ନାହିଁ, ତାହାହିଁ ମୋର ଯାହା ଦୁଃଖ ।" ଆନନ୍ଦରାୟ କହିଲେ ।

ସାନପୁଅ କହିଲା, "ବାପା ! ଆପଣ ମୁକୁନ୍ଦପୁରର କମଳବାବୁଙ୍କ ଘରକୁ ଭଲଭାବେ ଜାଣନ୍ତି ତ ?"

"ଜାଣେ ମାନେ ? ତାଙ୍କର ଅତି ସମ୍ଭ୍ରାନ୍ତ ପରିବାର ।"

"ବାପା, କମଳବାବୁଙ୍କ ପୁଅ ରବି ଥରେ ମୋ ସହ ଆମ ଘରକୁ ଆସିଥିଲା ମନେ ଅଛି ? ରବି ଆମ କଲ୍ୟାଣୀକୁ ଖୁବ ପସନ୍ଦ କରେ । ଆପଣଙ୍କର ଯଦି କୌଣସି ଆପତ୍ତି ନଥିବ, ତା' ସହ ବିବାହ ପ୍ରସ୍ତାବ ପକା କରିବା ଏବଂ ଯଥାଶୀଘ୍ର ବିବାହ କରିଦେବା ।"

ଆନନ୍ଦରାୟ ଶୈକ ଛଡ଼ି ଉଠି ପଡ଼ିଲେ ଓ କହିଲେ, "ବାପା ! ତୁ ମୋର ଚିନ୍ତା ରୋଗ ପାଇଁ ସବୁଠୁଁ ଭଲ ଔଷଧ ଦେଲୁ । ତୋର ଦୁଇ ଭାଇଯାକ ଖାଲି ହିସାବ ନିକାଶ କରିଗଲେ । କିନ୍ତୁ ଅସଲ ସମସ୍ୟା ବିଷୟରେ ଚିନ୍ତା କରିବାର କିଛି ଲକ୍ଷଣ ସେମାନଙ୍କଠିଁ ଦେଖିଲି ନାହିଁ । ସାବାସ୍ ପୁଅ, ସାବାସ୍ । ତୁ ଆଜି କମଳବାବୁଙ୍କ ଘରକୁ ମୋ ଚିଠି ଧରି ଯା' ।"

ଆନନ୍ଦରାୟ ଚିଠି ଲେଖିବାକୁ ପ୍ରସ୍ତୁତ ହେଲେ ।






[ ୮ ]

[ପିଙ୍ଗଳ ଦ୍ୱିତୀୟ ଥର ନଦୀଗର୍ଭରେ ଅବସ୍ଥିତ ପରିତ୍ୟକ୍ତ ଦେଉଳ ଭିତରେ ପ୍ରବେଶ କଲା । ବହୁ ବାଧା ଅତିକ୍ରମ କରି ସେ ମହାମାୟୀଙ୍କ ଅଙ୍ଗୁଠି, ଖଡ୍‌ଗ ଏବଂ ଗୋଲକ ସଂଗ୍ରହ କରି ବାହାରି ଆସିଲା । ସଙ୍ଗେ ସଙ୍ଗେ ନଦୀଗର୍ଭରୁ ଭୟଙ୍କର ଶବ୍ଦ କରି ଉତ୍ତାଳ ଜଳ ରାଶି ଉପରକୁ ଉଠିବାର ଦେଖାଗଲା । ତା'ପରେ···]

ସେ ଉତ୍ତାଳ ଜଳରାଶି ଦେଖି ତାନ୍ତ୍ରିକ ପଦ୍ମପାଦ ହଠାତ୍ କେଇ ପାଦ ପଛକୁ ଘୁଞ୍ଚିଗଲେ । ତାହା ଦେଖି ପିଙ୍ଗଳ ଆଶ୍ଚର୍ଯ୍ୟ ହେଲା । ସେ ପଚାରିଲା, "ପଦ୍ମପାଦ, ଆମେ ଆଜି ଯାହା କରାୟତ୍ତ କରିଛୁଁ, ସେଥିଯୋଗୁଁ ପୃଥିବୀରେ ଆମେ ସବୁଠାରୁ ବଳି ଶକ୍ତିଶାଳୀ ବୋଲି ତମେ କହୁଥିଲ । ତେବେ ଏ ପରିସ୍ଥିତିରେ ତମେ ଭୟ କରିବାର କାରଣ କ'ଣ ?"

ପଦ୍ମପାଦ ସଚେତ ହୋଇ ଟିକିଏ ହସିଲେ । ପିଙ୍ଗଳର ପିଠି ଥାପୁଡ଼ାଇଦେଇ ସେ କହିଲେ, "ତମ ପ୍ରଶ୍ନ ଯଥାର୍ଥ । ଆମେ ଯାହା ପାଇଛୁଁ, ତାହା ପାଇବା ପରେ ଆମେ ପ୍ରବଳ ଶକ୍ତିଶାଳୀ ହୋଇପାରିଛୁଁ । ମୋ ପାଇଁ ସେସବୁ ଅଭୂତ



ଟଙ୍କ ତୁଳନାରେ ବହୁତ ଅଧିକ ମୂଲ୍ୟବାନ ହେଲ ତମେ । ତମକୁ ମନ୍ତ୍ର-ତନ୍ତ୍ର ଜଣାନାହିଁ । ତଥାପି ଯେଭଳି ସାହସ ଓ ଧୈର୍ଯ୍ୟ ସହକାରେ ତୁମେ କାମ ହାସଲ କଲ, ତାହା ମୋତେ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ବିସ୍ମିତ କରିଛି । ମୁଁ କାହିଁକି ଭୟ କରୁଛି ବୋଲି ତମେ ପଚାରୁଛ । ଏ ଜଳରାଶି ଦେଖି ଯେ ମୁଁ ଭୟ କରୁଛି, ତାହା ନୁହେଁ । କିନ୍ତୁ···”

ଏହା କହି ସେ ନଦୀ ଗର୍ଭକୁ ଦୃଷ୍ଟିପାତ କଲେ । କିନ୍ତୁ ପିଙ୍ଗଳ ତାଙ୍କ ଦୃଷ୍ଟି ଅନୁସରଣ ନକରି ତାଙ୍କୁ କହିଲା, “ସାହସ ଓ ଧୈର୍ଯ୍ୟ ଭଳି କୌଣସି ଗୁଣ ଯଦି ମୋର ଅଛି, ତେବେ ତାହା ତମକୁ ସାହାଯ୍ୟ କରିବା ଢଙ୍ଗରେ କାମ ଦେବ । ତମେ ତ ଜାଣ ମୋ ଭାଗ୍ୟ ତୋରି ତମରି ସହ ବନ୍ଧା ହୋଇ ଯାଇଛି । ମୋଠାରୁ କିଛି ଲୁଚାଇବା ଦରକାର ନାହିଁ । ଯଦି ଅଧିକ କାଠିକର କାମ କିଛି ମୋ ଦ୍ୱାରା ହୋଇ ପାରିବ, ତେବେ କୁହ । ମୁଁ କରିବାକୁ ପ୍ରସ୍ତୁତ ଅଛି ।”

ପଦ୍ମପାଦ ମୁଣ୍ଡ ହଲାଇଲେ ଓ କହିଲେ, “ବର୍ତ୍ତମାନ ସମସ୍ୟା ଭିନ୍ନ ଧରଣର । ଆମେ ତ ମହାତାନ୍ତ୍ରିକ ମହାମାୟୁଙ୍କ ସବୁ ଶକ୍ତି ହାସଲ କରିନେଲୁଁ । ସେଥିପାଇଁ ଏ ଭଲ୍ଲୁକ ଅଞ୍ଚଳରେ ପୂର୍ବରୁ ଯେଉଁ ସବୁ ଦୁଷ୍ଟଶକ୍ତିମାନେ ଯଥେଚ୍ଛା ବିହାର କରୁଥିଲେ, ସେମାନେ ଦୁର୍ବଳ ହୋଇଯିବେ ଓ ନଷ୍ଟ ହେବେ, ଏଇଆ ଆଶା କରାଯାଏ । କିନ୍ତୁ ସେମାନେ ପ୍ରଚଣ୍ଡ ରୂପ ଧାରଣ କରି ଆମ ଆଗକୁ ଆସୁଛନ୍ତି । ଏହାହିଁ ଚିନ୍ତାର ବିଷୟ ।”

ଏଥର ପିଙ୍ଗଳ ପଦ୍ମପାଦଙ୍କ ଦୃଷ୍ଟି ଅନୁସରଣ କରି ନଦୀ ଗର୍ଭକୁ ଅନାଇଲେ । ସେଠାରେ ସେ ଦେଖିଲେ ବିଚିତ୍ର ଦୃଶ୍ୟ । ଭୟଙ୍କର ଓ ବିକୃତ ଦିଶୁଥିବା ନାନା ଧରଣର ଜୀବ ପରସ୍ପର ମାରାମାରି ହେଉଥିଲେ । ସେ ଦୃଶ୍ୟ ଯେ କୌଣସି ଲୋକକୁ ଭୟଭୀତ କରନ୍ତା ।

ପିଙ୍ଗଳ ଏଥର ଚମକିଗଲା ଓ ପଦ୍ମପାଦ ପାଖକୁ ଲାଗିଆସି କହିଲା, “ପଦ୍ମପାଦ ! ବାସ୍ତବିକ ମୁଁ ଏଭଳି ଦୃଶ୍ୟ କଳ୍ପନା କରିପାରି ନଥାନ୍ତି । ବାପ୍‌ରେ ! ଏମାନେ କେଡ଼େ ଭୀଷଣ



ଦିଶୁଛନ୍ତି! ଆଚ୍ଛା, ଆମେ ହସ୍ତଗତ କରିଥିବା କୌଣସି ଅସ୍ତ୍ରଶସ୍ତ୍ର ଦ୍ୱାରା ଏମାନଙ୍କୁ ଦମନ କରଯାଇ ପାରିବ ନାହିଁ ?"

ପଦ୍ମପାଦ ଅଳ୍ପ ସମୟ ସକାଶେ ମୌନ ରହି ପିଙ୍ଗଳ ଆଡ଼େ ଅନାଇ କହିଲେ, "ଆମେ ମହାମାୟୀଙ୍କ ସମାଧିରୁ ଯେଉଁ ସବୁ ବସ୍ତୁ ନେଇଆସି ପାରିଛୁଁ, ତାହା ଦ୍ୱାରା ମହାମାୟୀ ଏମାନଙ୍କ ପାଇଁ ନିରର୍ଥକ । ମହାମାୟୀଙ୍କୁହିଁ ଏମାନେ ଆଜଯାଏ ନିଜର ପ୍ରଭୁ ଭଳି ଦେଖି ଆସିଥିଲେ । ବର୍ତ୍ତମାନ ସେମାନେ ତାଙ୍କ ନିଜ ନିଜ ଭିତରୁ କିଏ ପ୍ରଭୁ ହେବ, ସେହି ବିଷୟ ଉପରେ ଝଗଡ଼ା କରୁଛନ୍ତି ଓ ମାଡ଼ଗୋଳ ହେଉଛନ୍ତି । ଏମାନଙ୍କୁ ଆମ ଆୟତ୍ତକୁ ଆଣିବାକୁ ପଡ଼ିବ । ତାହାର ଉପାୟ ମୁଁ ଚିନ୍ତା କରୁଛି । ଶୁଣ । ତୁମେ ଭଲ୍ଲୁକକେତୁକୁ ଭୁଲିଯାଇ ନାହଁ ତ ?"

"ନା ନା, ଭଲ୍ଲୁକକେତୁକୁ ଭୁଲିବି କିପରି ? ଦିନଥିଲା ଯେତେବେଳେ ସେ ଏ ମୁଲକ ଉପରେ ପ୍ରଭୁଥିଲା । ଫେରନ୍ତା ବାଟରେ ତାକୁ ବନ୍ଧନମୁକ୍ତ କରିବୁଁ ବୋଲି ଆମେ କଥା ଦେଇ ଆସିଛୁଁ । ସେ ବିଷୟରେ କ'ଣ କରିବାକୁ ହେବ, ସେକଥା ଚିନ୍ତା କରିଛ ତ ?" ପିଙ୍ଗଳ କହିଲା ।

"ବର୍ତ୍ତମାନ ସେହିକଥାହିଁ ଚିନ୍ତା କରୁଛି । ନେତା ବିନା ଏ ଭୂତ ପ୍ରେତ ପିଶାଚମାନେ କ୍ରମେ ଏ ଅଞ୍ଚଳରୁ ଯାଇ ଅନ୍ୟାନ୍ୟ ମୁଲକରେ ପ୍ରବେଶ କରି ଉତ୍ପାତ ଆରମ୍ଭ କରିବେ । ଏମାନଙ୍କ ଉପରେ କେହି ଜଣେ ନିୟନ୍ତ୍ରଣ ରଖିବା ଦରକାର । ମୁଁ ଭାବୁଛି ଭଲ୍ଲୁକ-କେତୁହିଁ ସେଥିପାଇଁ ଉପଯୁକ୍ତ ବ୍ୟକ୍ତି । ତାକୁ ମୁକ୍ତ କରି ଏମାନଙ୍କୁ ତା' ନିୟନ୍ତ୍ରଣରେ ରଖିବାକୁ ପଡ଼ିବ ।" ପଦ୍ମପାଦ କହିଲେ

"ଏହା ବେଶ୍ ଯୁକ୍ତିଯୁକ୍ତ କଥା । ତାହାହିଁ କରନ୍ତୁ ।" ପିଙ୍ଗଳ ପଦ୍ମପାଦ ସହ ଏକମତ ହେଲା ।

"ତେବେ ଆଉ ବିଳମ୍ବ କରନାହିଁ । ଭଲ୍ଲୁକକେତୁ କେଉଁଠାରେ ବନ୍ଦୀ ହୋଇ ରହିଛି, ତାହା ତମର ମନେଥିବ ନିଶ୍ଚୟ । ସେଠାକୁ ଯାଇ ତାକୁ ଜଲ୍‌ଦି ଏଠାକୁ

ନେଇଆସ । ତା'ପରେ ଦେଖାଯିବ ।" ପଦ୍ମପାଦ କହିଲେ ।

ଏହାପରେ ପଦ୍ମପାଦ ମହାମାତ୍ୟଙ୍କ ସମାଧିରୁ ସଂଗ୍ରହ କରାହୋଇଥିବା ବଜ୍ର-ତରବାରି ପିଙ୍ଗଳକୁ ଦେଇ କହିଲେ, "ଏହା ସାହାଯ୍ୟରେ ତମେ ଭଲ୍ଲୁକକେତୁର ପାଖକୁ ନଯାଇ ମଧ୍ୟ ତା' ବନ୍ଧନ ଛିନ୍ନ କରିପାରିବ । ପିଶାଚ-ଗଧ ତମକୁ ସେଠାକୁ ନେଇଯିବ ।" ପଦ୍ମପାଦ ନିଜ ଗଦା ବୁଲାଇଦେଲେ । ସଙ୍ଗେ ସଙ୍ଗେ ପାତାଳ ଗହ୍ୱର ଭିତରୁ ବାହାରି ଆସିଲ ପିଶାଚ-ଗଧ ।

ପିଙ୍ଗଳ ମହାମାତ୍ୟଙ୍କ ତରବାରି ଧରି ଗଧ ଉପରେ ସବାର ହେଲ । କେତେ ବଣ ଓ ପାହାଡ଼ ଉପର ଦେଇ ଉଡ଼ିଯାଇ ଗଧ ଭଲ୍ଲୁକକେତୁ ବନ୍ଦୀ ହୋଇ ରହିଥିବା ମୂଲକରେ ଯାଇ ପହଞ୍ଚିଗଲ ।

ପିଙ୍ଗଳକୁ ଦେଖିବା ମାତ୍ରେ ବନ୍ଦୀ ଭଲ୍ଲୁକକେତୁ ଚିତ୍କାର କରି କହିଲ, "ପ୍ରଭୁ ଶଙ୍କ ଭେନ୍ଦ୍ର! ମୋତେ ଏ ଦଶାରୁ ମୁକ୍ତ ଦିଅ । ମୁଁ ବହୁତ କଷ୍ଟ ପାଇଲିଣି । ମୋ ବନ୍ଧନ ଖସାଇ ଦିଅ । ତାହାହେଲେ ମୁଁ ସବୁଦିନ ତମର ଦାସାନୁଦାସ ହୋଇ ରହିବ । ଯେଉଁ ଆଦେଶ ଦେବ, ତାହାହିଁ କରିବ । ସେଥିରେ ଅନ୍ୟଥା ହେବ ନାହିଁ ।"

ପିଙ୍ଗଳ ଗଧରୁ ଓହ୍ଲାଇ କହିଲେ, "ଭଲ୍ଲୁକକେତୁ, ତମେ ମୋତେ କୌଣସି ଦେବତା ଠଉରାଇଲ କି? ଏମିତି ଅପୂର୍ବ ସମ୍ବୋଧନ କରୁଛ କାହିଁକି? ମୁଁ ସାଧାରଣ



ମଣିଷ । ତମ ସହ ପୂର୍ବରୁ ଥରେ ଦେଖା ହୋଇଥିଲା । ମୋ ନାମ ପିଙ୍ଗଳ ।"

"ଆପଣହିଁ ପିଙ୍ଗଳ ପରା । ମହାମାୟୁଙ୍କ ସମାଧି ଲୁଣ୍ଠନ କରିବାକୁ ବାହାରିଥିବା ମହାଭାନ୍ତିଙ୍କ ପଦ୍ମପାଦ ଆପଣଙ୍କ ଗୁରୁ ତ ?" ଭଲ୍ଲୁକକେତୁ ପଚାରିଲା ।

"ଠିକ୍ । ତମ ସ୍ମରଣଶକ୍ତି ଖୁବ୍ ତୀବ୍ର ଦେଖୁଛି ।" ପିଙ୍ଗଳ କହିଲା ।

"ମହାଭାନ୍ତିଙ୍କ ପଦ୍ମପାଦଙ୍କର ସବୁ କୁଶଳ ତ ? ସେ ମହାମାୟୁଙ୍କ ସମାଧି ପାଖରେ ପହଞ୍ଚିପାରିଲେ ତ ?" ଭଲ୍ଲୁକକେତୁ ପଚାରିଲା ।

"ମହାମାୟୁଙ୍କ ସମାଧିକୁ ମୁଁ ଯାଇଥିଲି । ମୁଁ ହାତରେ ଯାହା ଧରିଛି, ତାହାହିଁ ମହାମାୟୁଙ୍କ ବଜ୍ର-ତରବାରି ।" ଏହା କହି ପିଙ୍ଗଳ ସେ ତରବାରି ଭଲ୍ଲୁକକେତୁ ଯେଉଁ ଶିକୁଳିରେ ବନ୍ଧା ହୋଇଥିଲା ତାହା ଉପରେ ଆଘାତ କଲା । ସଙ୍ଗେ ସଙ୍ଗେ ବିଜୁଳି ଚମକିବା ଭଳି ଆଲୁଅ ଖେଳିଗଲା । ଭଲ୍ଲୁକକେତୁର ଲୌହ ବନ୍ଧନ ଜଳ ଭଳି ତରଳ ହୋଇ ଉଭେଇଗଲା ।

ଭଲ୍ଲୁକକେତୁ ନିଜର ବିଶାଳ ଶରୀର ଦୋହଲାଇ ଝାଡିଝୁଡି ଉଠି ଠିଆ ହେଲା । ସେ କୃତଜ୍ଞ ଭାବରେ ପିଙ୍ଗଳ ଆଡ଼େ ଅନାଇ ତା'ପରେ ତାକୁ ସାଷ୍ଟାଙ୍ଗ ପ୍ରଣିପାତ କଲା ଓ କହିଲା, "ପ୍ରଭୁ ଆପଣ ମୋତେ ବନ୍ଧନମୁକ୍ତ କଲେ । ମୋର ବହୁତ ଦୁଃଖ ଏହା ଦ୍ୱାରା ଦୂର କଲେ । ଏହି ମୁହୂର୍ତ୍ତରୁ ମୁଁ ଆପଣଙ୍କ






ଦାସ ହୋଇ ରହିଲି। ଆପଣଙ୍କ ପାଇଁ କ'ଣ କରିବି କୁହନ୍ତୁ। ମୋ ଉପରେ ବିଶ୍ୱାସ ରଖନ୍ତୁ। ଆପଣଙ୍କୁ କଦାପି ଦଗା ଦେବି ନାହିଁ।"

"ଶୁଣ ଭଲ୍ଲୁକକେତୁ। ତୁମକୁ ଅବିଶ୍ୱାସ କରୁଥିଲେ କ'ଣ ତୁମକୁ ବନ୍ଧନରୁ ମୁକ୍ତ ଦିଅନ୍ତୁ? ବର୍ତ୍ତମାନ ଆମକୁ ପଦ୍ମପାଦଙ୍କ ପାଖକୁ ଲେଉଟି ଯିବାକୁ ପଡ଼ିବ। ଭଲ୍ଲୁକ ପର୍ବତର ଘାଟିରେ ରହୁଥିବା ଭୂତପ୍ରେତମାନେ ବର୍ତ୍ତମାନ ନିଜ ନିଜ ଭିତରେ ମାଡ଼ଗୋଳ କରୁଛନ୍ତି। ସେମାନଙ୍କୁ ଶାସନ କରିବା ସକାଶେ କେହି ନାହିଁ। ପଦ୍ମପାଦଙ୍କର ବିଶ୍ୱାସ ସେମାନଙ୍କ ଉପରେ କର୍ତ୍ତା ହେବା ଭଳି ଯୋଗ୍ୟତା ତମ ଛଡ଼ା ଆଉ କାହାରି ନାହିଁ। ତମକୁ ସେମାନଙ୍କର ନେତା ରୂପେ ବସାଇଲେ ଆମେ ଖୁସି ହେବୁଁ।" ପିଙ୍ଗଳ କହିଲା।

କିନ୍ତୁ ପିଙ୍ଗଳର ପ୍ରସ୍ତାବରେ ଖୁସି ହେବା ତ ଦୂରର କଥା ଭଲ୍ଲୁକକେତୁର ଚେହେରା ପଡ଼ିଗଲା। ସେ କହିଲା, "ମହାଭାଗ! ମୋତେ ସେ ଦାୟିତ୍ୱ ଦିଅନ୍ତୁ ନାହିଁ। ସେ କାମ ମୋ ଦେଇ ହୋଇ ପାରିବ ନାହିଁ। ମଣିଷଙ୍କ ଭିତରେ ଯିଏ ପରାକ୍ରମୀ ବା ମହାତାନ୍ତ୍ରିକ, ତା'ର ସେବା କରିବାକୁ ମୁଁ ସର୍ବଦା ତିଆର। ଜୀବନ ସାରା ସେଇଆ କରି ଆସିଛି। ଆପଣ ଓ ପଦ୍ମପାଦ ଅସୀମ ସାହସୀ ଓ ମହାତାନ୍ତ୍ରିକ। ଆପଣଙ୍କ ସେବକ ହୋଇ ରହିବି ସିନା, କିନ୍ତୁ ସେ ଦୁଷ୍ଟ ଭୂତପ୍ରେତ ଦଳଙ୍କ ଉପରେ ପ୍ରଭୁତ୍ୱ କରିବାକୁ ଯିବି ନାହିଁ।"

"ତମର ଖୋଲାଖୋଲି କଥା ଶୁଣି ମୁଁ ଆନନ୍ଦିତ। ତମେ ଆମ ସେବାରେ ନିଯୁକ୍ତ ହେବାକୁ ପ୍ରସ୍ତୁତ ଏହା ବି ଆନନ୍ଦର ବିଷୟ। ଅବଶ୍ୟ ତୁମକୁ ସେ ଭୂତପ୍ରେତଙ୍କ ଦାୟିତ୍ୱ ଦିଆହେବ କି ନାହିଁ, ସେ ବିଷୟରେ ପଦ୍ମପାଦ ସିଦ୍ଧାନ୍ତ ନେବେ। ଚାଲ, ତାଙ୍କ ପାଖକୁ ଯିବା।" ପିଙ୍ଗଳ କହିଲା।

ଏହାପରେ ସେ ସେମିତି ପିଶାଚ-ଗଧ ଉପରେ ବସିବାକୁ ଉଦ୍ୟତ ହୋଇଛି, ଭଲ୍ଲୁକକେତୁ ସେ ଗଧଟିକୁ ଧରି ପକାଇ ଗୋଟାଏ ପେଣ୍ଡୁ ଭଳି ଶୂନ୍ୟକୁ ଫୋପାଡ଼ି ଦେଲା। ପିଙ୍ଗଳ ତା'ର ସେପରି ବ୍ୟବହାର

ଦେଖି ଆଶ୍ଚର୍ଯ୍ୟ ହେଲା । କିନ୍ତୁ ଭଲ୍ଲୁକକେତୁ କହିଲା, "ପ୍ରଭୁ ! ଏ ସାମାନ୍ୟ ଗଧ ଆପଣଙ୍କର ଯୋଗ୍ୟ ବାହନ ନୁହେଁ । ଆପଣ ମୋ ଉପରେ ବସନ୍ତୁ । ମୁଁ ସଙ୍ଗେ ସଙ୍ଗେ ଆପଣଙ୍କୁ ପଦ୍ମପାଦଙ୍କ ପାଖକୁ ନେଇଯିବି ।"

ଗଧ ମେଘମାଳା ଭିତରେ ରଡ଼ି ଛାଡିବାର ଶୁଣାଗଲା । ଭଲ୍ଲୁକକେତୁ ଅଟ୍ଟହାସ୍ୟ କରି କହିଲା, "ପ୍ରଭୁ ! ଆପଣ ସଙ୍କୋଚ ନକରି ମୋ ପିଠିରେ ବସି ଯାନ୍ତୁ ।"

ପିଙ୍ଗଳ ଭଲ୍ଲୁକକେତୁ ପିଠିରେ ଚଢ଼ି ବସିବା ମାତ୍ରେ ତା' ବିଶାଳ ବପୁ ଆକାଶକୁ ଉଠିଗଲା । ସାଏଁ ସାଏଁ କରି ସେ ଉଡ଼ିଯାଇ ମୁହୂର୍ତ୍ତକ ପରେ ପିଙ୍ଗଳକୁ ପଦ୍ମପାଦ ଆଗରେ ଓହ୍ଲାଇଦେଲା ।

ପଦ୍ମପାଦ ଭଲ୍ଲୁକକେତୁକୁ ଦେଖି ଖୁସି ହେଲେ ଓ ନଦୀ ଗର୍ଭକୁ ତା' ଦୃଷ୍ଟି ଆକର୍ଷଣ କରି କହିଲେ, "ଭଲ୍ଲୁକକେତୁ ! ଦେଖ ସେମାନେ କେମିତି ଭୀଷଣ ଭାବରେ ଲଢ଼େଇ କରୁଛନ୍ତି । ଏହାକୁ ବନ୍ଦ କରିବାକୁ ହେବ । ତମେ ସେମାନଙ୍କ କର୍ତ୍ତା ହୁଅ ।"

ପିଙ୍ଗଳ କହିଲା, "ପଦ୍ମପାଦ ! ଭଲ୍ଲୁକକେତୁ ସେ ଦାୟିତ୍ୱ ନେବାକୁ କୁଣ୍ଠିତ । ସେ ତୁମ ସେବକ ଭାବରେ ରହିବ, କିନ୍ତୁ ସେ ଭୂତ-ପ୍ରେତଙ୍କ ମାଲିକ ହେବ ନାହିଁ ।"

ପଦ୍ମପାଦ କହିଲେ, "ଭଲ୍ଲୁକକେତୁ ଆମ ସାଥିରେ ଥିଲେ ଆମର ବହୁତ ଉପକାର ହେବ । କିନ୍ତୁ ଏ ଭୂତପ୍ରେତ ଦଳକୁ ଆମେ ଏହିପରି ଅବସ୍ଥାରେ ଛାଡ଼ିଦେଇ ଯିବା କିପରି ? ତାହା କ'ଣ ଭଲ କଥା ହେବ ?"

"ସେମାନଙ୍କ କଥା ମୋ ଉପରେ ଛାଡି ଦିଅନ୍ତୁ ।" ଭଲ୍ଲୁକକେତୁ ଆଉ କିଛି କହିବା ପୂର୍ବରୁ ଭୂତପ୍ରେତମାନେ ତାକୁ ଦେଖି ପକାଇଲେ । "ଓହୋ, ଓହୋ ! ଭଲ୍ଲୁକ-କେତୁ !" ସମସ୍ୱରରେ ଏହା କହି ସେମାନେ ତା' ଆଡ଼େ ଦୌଡ଼ି ଆସିବାର ଦେଖାଗଲା ।

(କ୍ରମଶଃ)






# ଅଧିକାର

ନିଶା ଗରଜୁଥାଏ। ବର୍ଷା ସାଙ୍ଗକୁ ଘନ ଘନ ବଜ୍ରପାତର ଧ୍ୱନିରେ ଗୃରଦଗ କମ୍ପି ଉଠୁଥାଏ। ଶ୍ୱାନଶ୍ୱାପଦଙ୍କ ରଡ ସହ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ। ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ବି ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷ ଆରୋହଣ କରି ଶବଟିକୁ ଉତାରି ଆଣିଲେ। ତେବେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ମୋର ଧାରଣା କୌଣସି କଠିନ୍ ସିଦ୍ଧି ସାଧନ କରିବା ଉଦ୍ଦେଶ୍ୟରେ ତମକୁ କେହି ତାନ୍ତ୍ରିକ ଏଭଳି କାମରେ ଲଗାଇଛି। ତାନ୍ତ୍ରିକମାନଙ୍କ ଉପରେ ପୁରା ବିଶ୍ୱାସ

**ବେତାଳ କଥା**



କରାଯାଇ ପାରେକି? ଏ ବିଷୟରେ ଗୋଟାଏ ଘଟଣା କହୁଛି। ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।"

ବେତାଳ ଗପିଲା: ବିଦ୍ୟାଚଳ ପର୍ବତର ଗୋଟିଏ ଘାଟିରେ ଜଣେ ସାଧକ ରହୁଥିଲେ। ସେ ଥିଲେ ଯୋଗୀ ଓ ତାନ୍ତ୍ରିକ।

ସୁବାକ ନାମକ ଯୁବକଟିଏ ତାଙ୍କ ପାଖରେ ବହୁଦିନ ରହିଗଲା ଓ ତାଙ୍କର ଅସାଧାରଣ ତନ୍ତ୍ରଶକ୍ତିର ପରିଚୟ ପାଇଲା। ଦିନେ ସେ ଯୋଗୀଙ୍କୁ କହିଲା, "ଗୁରୁଦେବ! ଆପଣ ତନ୍ତ୍ରବିଦ୍ୟାରେ ଯେପରି ସିଦ୍ଧି ଲାଭ କରିଛନ୍ତି, ତା'ର ତୁଳନା ନାହିଁ। ଆପଣ ସେସବୁ ବିଦ୍ୟା ମୋତେ ଶିଖାଇ ଦିଅନ୍ତୁ।"

"ବତ୍ସ! ସେସବୁ ଶିଖାଇବାରେ ମୋର ଉତ୍ସାହ ନାହିଁ। ସେସବୁ ଆୟତ୍ତ କରି ତୋର ପ୍ରକୃତ ଲାଭ କିଛି ହେବ ନାହିଁ।" ଗୁରୁ କହିଲେ।

ଗୁରୁଙ୍କ ଏଭଳି କଥାରେ ସୁବାକ ହତୋତ୍ସାହ ହେଲା ନାହିଁ। ସେ ସେଠାରେ ଆହୁରି କିଛିଦିନ ରହି ସେବା ଦ୍ୱାରା ଗୁରୁଙ୍କ ପ୍ରୀତିଭାଜନ ହେବାକୁ ସ୍ଥିର କଲା। ବର୍ଷଟିଏ ବିତିଯିବା ପରେ ସେ ଗୁରୁଙ୍କୁ ପୁଣି କହିଲା, "ମହାଭାଗ, ଏଥର ମୋତେ ସଦୟ ହୁଅନ୍ତୁ।"

ଗୁରୁ କିଛି ସମୟ ମୌନ ରହି କହିଲେ, "ତମେ ଯଦି ଉତ୍କଳ ଦେଶର ରାଜକୁମାରୀ ବିଦ୍ୟୁତ୍‌ଲତାଙ୍କୁ ବିବାହ କରି ପାରିବ, ସବୁ ତନ୍ତ୍ର ବିଦ୍ୟା ଶିଖିବାର ଅଧିକାର ପାଇବ।"

ସୁବାକ ଉତ୍କଳ ଦେଶକୁ ଯାଇ ଯେତିକି ବିଦ୍ୟା ଶିଖିଥିଲା ତାହା ପ୍ରୟୋଗ କରି ନାନା ଆଶ୍ଚର୍ଯ୍ୟ ଯାଦୁ ଦେଖାଇଲା। ତା'ର ଖ୍ୟାତି ଯାଇ ରାଜାଙ୍କ କାନରେ ପଡ଼ିଲା। ଯାଦୁବିଦ୍ୟା ପ୍ରତି ରାଜକୁମାରୀ ବିଦ୍ୟୁତ୍‌ଲତାଙ୍କର ବହୁତ ଆକର୍ଷଣ ଥାଏ। ରାଜା ସୁବାକକୁ ଡକାଇ କହିଲେ, "ଶୁଣୁଛି ତମେ ଇନ୍ଦ୍ରଜାଲ ବିଦ୍ୟାରେ ଧୁରନ୍ଧର। ଅନ୍ତଃପୁରରେ କିଛି ବିଦ୍ୟା ଦେଖାଇବାରେ ଆପତ୍ତି ଅଛି?"

ସୁବାକ କହିଲା, "ମହାରାଜ! ସାଧାରଣ ଇନ୍ଦ୍ରଜାଲ ବୋଇଲେ ଯାହା ବୁଝାଏ ମୁଁ ସେସବୁ ଆୟତ୍ତ କରିନାହିଁ। ମୁଁ କିଛି ତନ୍ତ୍ର

ବିଦ୍ୟା ଶିଖିଛି । ଆପଣଙ୍କ ନିର୍ଦ୍ଦେଶ ମାନି ମୁଁ ସେସବୁ ଅନ୍ତଃପୁରରେ ଦେଖାଇବାକୁ ପ୍ରସ୍ତୁତ ଅଛି । କିନ୍ତୁ ମୋର ଗୋଟିଏ ଅନୁରୋଧ ଅଛି । ରାଜକୁମାରୀଙ୍କ ସହ ଏକାନ୍ତରେ କିଛି ଆଲୋଚନା କରିବାକୁ ମୋତେ ଅନୁମତି ମିଳୁ ।"

ରାଜାଙ୍କର ସେଥିରେ ଆପତ୍ତି କରିବାର କାରଣ ନଥିଲା । ସୁବାଜ ଉଆସ ଭିତରେ ତାଙ୍କ ବିଦ୍ୟା ପ୍ରଦର୍ଶନ କଲେ । ମେଘ ଭିତରୁ ସେ ଗୋଟାଏ ସର୍ପମୁଖୀ ଦାନବ ସୃଷ୍ଟି କରି ସମସ୍ତଙ୍କୁ ଚମକାଇ ଦେଲେ ।

ସୁବାଜ ରାଜକୁମାରୀଙ୍କୁ ପଚାରିଲେ, "କିପରି ଦେଖିଲେ ?"

"ଏଡ଼େ ଚମତ୍କାର ଖେଳ ମୁଁ ଜୀବନରେ କେବେ ଦେଖି ନଥିଲି ।"

ଏହାପରେ ରାଜକୁମାରୀଙ୍କ ସହ ଏକା ଗୋଟିଏ ପ୍ରକୋଷ୍ଠକୁ ଯାଇ ସୁବାଜ କହିଲେ, "ରାଜକୁମାରୀ! ଆପଣ ଯାହା ଦେଖିଲେ, ତାହା କିଛି ନୁହେଁ । ଏହା ତୁଳନାରେ ଶହେ ବା ହଜାରେ ଗୁଣ ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରିବା ମୋ ପକ୍ଷରେ ସମ୍ଭବପର ହେବ । କିନ୍ତୁ ସେଥିପାଇଁ ଆପଣଙ୍କ ସହଯୋଗ ଲୋଡ଼ା ।"

ରାଜକୁମାରୀ ଟିକିଏ ଆଶ୍ଚର୍ଯ୍ୟ ହେଲେ ।

ସୁବାଜ ଟିକିଏ ଇତସ୍ତତଃ କରି କହିଲେ, "ମୋ ଗୁରୁ କହିଛନ୍ତି, ଯଦି ଆପଣ ମୋତେ ବିଭା ହେବେ, ତେବେ ମୁଁ ଅଶେଷ ଶକ୍ତିଶାଳୀ ତାନ୍ତ୍ରିକ ହୋଇ ପାରିବି ।"

ରାଜକୁମାରୀ ମୁହଁ ଶୁଖାଇ କହିଲେ, "ଓଃ ଦୁଃଖିତ । ଏ ପ୍ରସ୍ତାବ ଗ୍ରହଣ କରିବା ସମ୍ଭବପର





ନୁହେଁ। ବିଜୟପୁରର ରଜା କୁମାରେନ୍ଦ୍ରଙ୍କ ସହ ମୋର ବିବାହ ସ୍ଥିର ହୋଇଯାଇଛି। ସେ ଆଗାମୀ କାଲି ଆସୁଛନ୍ତି।"

"ଭଲ ଦେଖନ୍ତୁ। ଆପଣ ଯଦି କୁମାରେନ୍ଦ୍ରଙ୍କୁ ବିଭା ହେବେ, ତେବେ ବିଜୟପୁରର ରାଣୀ ହେବେ। କିନ୍ତୁ ଯଦି ମୋତେ ବିଭା ହେବେ, ତେବେ ସାରା ପୃଥିବୀର ରାଣୀ ହୋଇ ପାରିବେ।" ସୁବାକ କହିଲା।

"ପୃଥିବୀର ରାଣୀ ହେବା ମୋ ଭାଗ୍ୟରେ ନାହିଁ ବୋଲି ଜାଣନ୍ତୁ।"

ସୁବାକ କିଛି ସମୟ ସ୍ତବ୍ଧ ଭାବରେ ଠିଆ ହୋଇ ରହିଲା ଓ ତା'ପରେ କହିଲା, "ବେଶ୍, ମୁଁ ରାଜା କୁମାରେନ୍ଦ୍ର ଏଠାକୁ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ।"

ପରଦିନ ରାଜା କୁମାରେନ୍ଦ୍ର ଆସି ପହଞ୍ଚିଲେ। ସୁବାକ ତାଙ୍କୁ ସବୁକଥା କହି ରାଜକୁମାରୀଙ୍କୁ ବିବାହ କରିବାରୁ ସେ ବିରତ ହୁଅନ୍ତୁ, ଏହି ଅନୁରୋଧ କଲା।

କୁମାରେନ୍ଦ୍ର ସୁବାକ ପ୍ରତି ଖୁବ୍ ଭଦ୍ର ବ୍ୟବହାର ଦେଖାଇଲେ, କିନ୍ତୁ କହିଲେ, "ଆପଣ ଅନ୍ୟ କୌଣସି ସାହାଯ୍ୟ ଲୋଡ଼ିଲେ ମୁଁ ଦେବାକୁ ପ୍ରସ୍ତୁତ। କିନ୍ତୁ ରାଜକୁମାରୀ ବିଦ୍ୟୁଲ୍ଲତା ଓ ମୁଁ ବିଭା ହେବୁଁ ବୋଲି ଅନେକ ଦିନ ହେଲା ସ୍ଥିର କରିଛୁଁ।"

"ଓଃ, ଏପରି କଥା ? ଆଚ୍ଛା ଦେଖିବା।" ଏହା କହି ସୁବାକ କିଛି ମନ୍ତ୍ର ପଢ଼ି ରାଜା କୁମାରେନ୍ଦ୍ରଙ୍କ ମୁହଁ ଉପରକୁ ଟିକିଏ ବାଲି ଫୋପାଡ଼ିଦେଲା। ସଙ୍ଗେ ସଙ୍ଗେ କୁମାରେନ୍ଦ୍ର ଦର୍ପଣକୁ ଅନାଇ ଦେଖିଲେ ତାଙ୍କ ମୁହଁ ବିକୃତ ହୋଇ ଯାଇଛି। ସୁବାକ ହସିଲା। କୁମାରେନ୍ଦ୍ର ବିମର୍ଷ ଭାବରେ ବସି ପଡ଼ିଲେ ଓ କହିଲେ, "ତମେ ନିରୀହ ଲୋକକୁ ଏଭଳି ଦଣ୍ଡ ଦେଲ ? ଅବଶ୍ୟ ଏ ଚେହେରା ନେଇ ମୁଁ ରାଜକୁମାରୀଙ୍କୁ ବିଭା ହେବାକୁ ଯିବନାହିଁ।"

ଜଣେ ପରିଚାରିକା ଝରକା ବାହାରେ ଥାଇ ସବୁ ଶୁଣୁଥିଲା ଓ ଦେଖୁଥିଲା। ସେ ଦୌଡ଼ି ଯାଇ ରାଜକୁମାରୀଙ୍କୁ ଏ ବିଷୟରେ ଖବର ଦେଲା। ରାଜକୁମାରୀ କହିଲେ, "ମୁଁ



କୁମାରେନ୍ଦ୍ରଙ୍କ ଚେହେରା ଯୋଗୁ ତାଙ୍କୁ ବିଭା ହେବାକୁ ବସିଥିଲି, ସେକଥା ନୁହେଁ । ମୁଁ ତାଙ୍କ ସ୍ୱଭାବ ଚେତନାକୁ ଭଲପାଏଁ । ତେଣୁ ମୁଁ ତାଙ୍କୁ ନିଶ୍ଚେ ବିଭା ହେବି ।"

ଏ ସମ୍ବାଦ ଆସି କୁମାରେନ୍ଦ୍ରଙ୍କ କାନରେ ପଡ଼ିଲା । ସେ ସୁବାଳକୁ କହିଲେ, "ଦେଖିଲେ ତ ? ଆମ ବିବାହ ଅନିବାର୍ଯ୍ୟ ।"

ସୁବାଳ ବହୁତ ବିଚଳିତ ଜଣାଗଲା । ସେ ପୁଣି କୁମାରେନ୍ଦ୍ରଙ୍କୁ କହିଲା, "ଆପଣ ଯୁବକ ରାଜା । ଆପଣଙ୍କୁ କନ୍ୟା ଅଭାବ ହେବ ନାହିଁ । ଏଭଳି ରୂପ ନେଇ ଆପଣ ତାଙ୍କୁ ବିଭା ହେବା କ'ଣ ସୁନ୍ଦର ହେବ ? ରାଜକୁମାରୀ ମୋତେ ବିବାହ କଲେ ପୃଥିବୀର ରାଣୀ ହେବେ ।"

"ଆପଣ ଠିକ୍ କହୁଛନ୍ତି । କିନ୍ତୁ ରାଜକୁମାରୀଙ୍କର ଯାହା ଇଚ୍ଛା, ତାହାହିଁ ହେବ ।" କୁମାରେନ୍ଦ୍ର ଜଣାଇଦେଲେ ।

ସୁବାଳ ଆଉ କିଛି କହିପାରିଲା ନାହିଁ । ଯଥା ସମୟରେ ରାଜକୁମାରୀ ଓ କୁମାରେନ୍ଦ୍ରଙ୍କ ବିବାହ ସମ୍ପନ୍ନ ହୋଇଗଲା । ବିବାହ ଶେଷ ହେବା ମାତ୍ରେ କୁମାରେନ୍ଦ୍ର ପୁଣି ନିଜ ରୂପ ଫେରି ପାଇଲେ ।

ସୁବାଳ ବିଦ୍ୟାଚଳ ଘାଟିକୁ ଫେରିଗଲା ଓ ଗୁରୁଙ୍କୁ ପ୍ରଣାମ କରି ଉତ୍ତେଜିତ କଣ୍ଠରେ କହିଲା, "ଗୁରୁଦେବ ! ମୋ କାର୍ଯ୍ୟରେ ମୁଁ ସଫଳ ହୋଇ ପାରିଲି ନାହିଁ । ମୋର ଧାରଣା, ମୁଁ ଏଥିରେ ସଫଳ ହେବି ନାହିଁ ଜାଣି ମଧ୍ୟ ଆପଣ ମୋତେ ଏ କାର୍ଯ୍ୟ ଭାର ଦେଇଥିଲେ । କାହିଁକି ଏପରି କଲେ ?"

ଗୁରୁ ଅଳ୍ପ ହସି କହିଲେ, "ବତ୍ସ! ସେହି ପ୍ରଶ୍ନ ଉପରେ ମନ ସ୍ଥିର କର ଓ ତାହାର ଉତ୍ତର ପାଇବାକୁ ଚେଷ୍ଟା କର । ଯଦି ତା'ର ଉତ୍ତର ପାଇଯିବୁ, ଏ ଜୀବନର ବହୁତ ଉନ୍ନତି କଲୁ ବୋଲି ଜାଣିବୁ । ଯା ।"

ସୁବାଳ ନୀରବରେ ଚାଲିଗଲା ।

ବେତାଳ ଟିକିଏ ରହିଯାଇ ପ୍ରଶ୍ନ କଲା, "ଯିଏ ଗୁରୁ ଓ ସୁବାଳ ଭିତରେ ହୋଇଥିବା ଶେଷ କଥାବାର୍ତ୍ତା ଶୁଣିଥିବ, ତା'ର ଧାରଣା ହେବ ଯେ ଗୁରୁ ବାସ୍ତବିକ ସବୁ ଜାଣିଶୁଣି ସୁବାଳକୁ ଉଜ୍ଜ୍ୱଳ ଦେଶର ରାଜକୁମାରୀଙ୍କ

ପାଖକୁ ପଠାଇଥିଲେ । ସେ ବାସ୍ତବରେ କାହିଁକି ଏପରି କଲେ ? ଯଦି ସେ ସୁବାକକୁ କିଛି କିଛି ତନ୍ତ୍ର ବିଦ୍ୟା ଶିଖାଇଦେଲେ, ଆଉ ଅଧିକ ଶିକ୍ଷା ନଦେଲେ କାହିଁକି ? ସେ କାହିଁକି ବା କହିଲେ ଯେ ସୁବାକ ନିଜେ ପଚାରିଥିବା ପ୍ରଶ୍ନର ଉତ୍ତର ଯଦି ନିଜେ ଖୋଜି ପାଇବ ତେବେ ତା'ର ବହୁତ ଉନ୍ନତି ହେବ ? ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଶକ୍ତିଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ଯିଏ ତନ୍ତ୍ରବିଦ୍ୟା ଦ୍ୱାରା ଅମାପ ଶକ୍ତି ଲଭ କରିବ, ଯିଏ ନିଃସ୍ୱାର୍ଥପର ମହତ୍ ଓ ଜ୍ଞାନୀ ହୋଇଥିବା ଲୋଡ଼ା । ନହେଲେ ଯିଏ ନିଜ ଶକ୍ତିର ଅପବ୍ୟବହାର କରି ପୃଥିବୀର ଅନିଷ୍ଟ କରିବ । ଗୁରୁ ଜାଣିଥିଲେ ଯେ ସୁବାକ ସ୍ୱାର୍ଥପର । ତେଣୁ ସେ ତାକୁ ଅଧିକ ତନ୍ତ୍ରବିଦ୍ୟା ଶିଖାଇବାକୁ ଚାହୁଁ ନଥିଲେ । ତାକୁ ଯେତିକି ବିଦ୍ୟା ଶିଖାଇଥିଲେ, ତାହାର ଫଳ କ୍ଷଣସ୍ଥାୟୀ । ସୁବାକ ରାଜା କୁମାରେନ୍ଦ୍ରଙ୍କୁ କୁରୂପ କରିଦେବା ସତ୍ତ୍ୱେ ସେ ଯାଦୁ ଦୀର୍ଘସ୍ଥାୟୀ ହେଲା ନାହିଁ, ଏହାହିଁ ତା'ର ପ୍ରମାଣ । ଗୁରୁ ଯାହା ସୁବାକ ନିଜେ ବୁଝୁ ବୋଲି ଚାହୁଁଥିଲେ, ତାହା ହେଲା, ସୁବାକ ଅଧିକ ତନ୍ତ୍ରବିଦ୍ୟା ଶିଖିବାର ଅଧିକାରୀ ନୁହେଁ । ଉତ୍କଳ ଦେଶର ରାଜକୁମାରୀଙ୍କ ପାଖକୁ ପଠାଇ ଗୁରୁ ତାକୁ ଏତିକି ବୁଝାଇବାକୁ ଚେଷ୍ଟା କରୁଥିଲେ ଯେ ସେ ନିଜ ସ୍ୱାର୍ଥ ଛଡ଼ା ଅନ୍ୟର ମହତ୍ତ୍ୱ ବୁଝିପାରେ ନାହିଁ । ସେ ଯଦି ଏ ବିଷୟରେ ନିଜେ ଚେତି ଉଠନ୍ତା, ତେବେ ଜୀବନରେ ନିଃସ୍ୱାର୍ଥପର ହେବାକୁ ଚେଷ୍ଟା କରନ୍ତା । ଅର୍ଥାତ୍ ଉନ୍ନତି କରନ୍ତା ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଅବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ବୃକ୍ଷଡାଳରେ ଝୁଲି ପଡିଲା ।





# "ବୋକା ଜମିଦାର"

ଗୋଟିଏ ଗାଁରେ ଜଣେ ଜମିଦାର ଥା'ନ୍ତି । ତାଙ୍କର ଗୋଟିଏ ବଦଭ୍ୟାସ ଥାଏ; ଯାହା ବିଷୟରେ କଥା କହିବେ ତାକୁ ବୋକା ବୋଲି ନିଶ୍ଚୟ କହିବେ ।

ଥରେ ଜମିଦାର କୌଣସି କାମରେ ଦୂର ଗାଁକୁ ଯାଇଥିଲେ । ଫେରିବାବେଳକୁ ରାତି ହୋଇ ଯିବାରୁ ସେ ଗୋଟିଏ ଅତିଥିଶାଳାରେ ରାତିକ ରହିଲେ । ନିଜ ପ୍ରକୋଷ୍ଠରେ ବସି ସେ ଶୁଣିବାକୁ ପାଇଲେ ଅନ୍ୟ ପ୍ରକୋଷ୍ଠରେ ଥିବା ଦୁଇଜଣ ଲୋକଙ୍କ କଥାବାର୍ତ୍ତା ।

ପ୍ରଥମ ଜଣକ କହିଲା, "ଓ ଆପଣ ବି ହରିପୁର ଗାଁକୁ ଯାଉଛନ୍ତି ? ଭଲ ହେଲା ଏକ ସଙ୍ଗେ ଯିବା । ଆପଣ କାହା ଘରକୁ ଯିବେ ?"

ଦ୍ୱିତୀୟ ବ୍ୟକ୍ତି କହିଲା, "ମୁଁ ଜମିଦାରଙ୍କ ଘରକୁ ଯିବି ।"

ପ୍ରଥମ ବ୍ୟକ୍ତି: "ଓ, ବୁଝିଲି ବୋକା ଜମିଦାରଙ୍କ ଘରକୁ ତ ?"

ଦ୍ୱିତୀୟ ବ୍ୟକ୍ତି, "ଆରେ, ଆପଣ ଏ କ'ଣ କହୁଛନ୍ତି ? ମୁଁ ତ ଶୁଣିଛି ଆପଣଙ୍କ ଗ୍ରାମରେ ଜମିଦାରବାବୁ ସବୁଠାରୁ ସମ୍ଭ୍ରାନ୍ତ ଲୋକ । ସେଥିପାଇଁ ତ ମୋର ଏକମାତ୍ର ପୁଅ ପାଇଁ ତାଙ୍କ ଘରୁ କନ୍ୟା ଆଣିବା ପ୍ରସ୍ତାବ ଦେବାକୁ ଯାଉଛି !"

ପ୍ରଥମ ବ୍ୟକ୍ତି କହିଲା, "ଆରେ ଆପଣ ଡ଼ରି ଯାଉଛନ୍ତି କି ? ଏଥିରେ କିଛି ସନ୍ଦେହ ନାହିଁ ଯେ ଜମିଦାର ଜଣେ ସୁଖୀ ଓ ଧନୀ ବ୍ୟକ୍ତି ।"

ପ୍ରଥମ ବ୍ୟକ୍ତି କହିଲା, "ତାହାହେଲେ ବୋକା ବୋଲି ତାଙ୍କୁ କାହିଁକି କହୁଛନ୍ତି ?"

ଦ୍ୱିତୀୟ ବ୍ୟକ୍ତି ହସିଲା ଓ କହିଲା, "କଥା କ'ଣ କି ଜମିଦାରବାବୁ ଯେବେ ଯାହା ବିଷୟରେ କିଛି ବୁଝନ୍ତି, ତାକୁ ବୋକା

ବୋଲିହିଁ କହନ୍ତି । ସେ ଏମିତି ସବୁ କଥାରେ ବୋକା ଶବ୍ଦ ବ୍ୟବହାର କରୁଥିବା ଯୋଗୁଁ ଗାଁ ଲୋକେ ତାଙ୍କ ନାମ ଆଗରେ "ବୋକା" ପଦବାଚ୍ୟ ଯୋଡ଼ି ଦେଇଛନ୍ତି । ତାଙ୍କ କଥା ପଡ଼ିଲେ ସମସ୍ତେ ତାଙ୍କୁ "ବୋକା ଜମିଦାର" ବୋଲି କୁହନ୍ତି ।

ପ୍ରଥମ ବ୍ୟକ୍ତି: "ତାହାହେଲେ ଜମିଦାରଙ୍କର ଅନ୍ୟକୁ ସମାଲୋଚନା କରିବାର ବଦଭ୍ୟାସଟି ଅଛି !"

ଏସବୁ କଥା ଶୁଣିବା ପରେ ଜମିଦାର ନିଜ ପ୍ରକୋଷ୍ଠ ଛାଡ଼ି ଅନ୍ୟ ପ୍ରକୋଷ୍ଠକୁ ଗଲେ ଓ ସେ ଦୁଇଜଣଙ୍କୁ କହିଲେ, "ମୁଁ ଆପଣମାନଙ୍କ କଥାବାର୍ତ୍ତା ଶୁଣିଛି । ମୋ ଗାଁର ଲୋକମାନେ ମୋତେ ଏପରି କହିବା ମୁଁ ଜାଣି ନଥିଲି । କିନ୍ତୁ ଏବେ ଉପଲବ୍ଧି କରୁଛି ମଣିଷର ସୁନାମ ବା ସୁଖ୍ୟାତି ପାଇଁ କେବଳ ଧନସମ୍ପତ୍ତି ଯଥେଷ୍ଟ ନୁହେଁ, ଭଲ ବ୍ୟବହାର ମଧ୍ୟ ଆବଶ୍ୟକ । ଏବେ ମୋର ଆଖି ଖୋଲିଗଲା ।"

"ଆପଣଙ୍କ କଥା ଶୁଣିଲେ ମନେହୁଏ, ଆପଣ ଶିଷ୍ଟାଗ୍ରର ବଳୟରେ ସଚେତନ, ଆପଣଙ୍କ ହୃଦୟ ମଧ୍ୟ ପବିତ୍ର !" ସମ୍ବନ୍ଧ ପକାଇବା ବ୍ୟକ୍ତି କହିଲା ।

ଜମିଦାର ଟିକିଏ ରହିଯାଇ କହିଲେ, "ମଣିଷ ଭିତରେ ଜାଣତରେ ବା ଅଜାଣତରେ ବେଳେ ବେଳେ ଭୁଲ୍ ଗୁଣ ଦେଖା ଯାଇଥାଏ । ଅନ୍ୟ କେହି ତାକୁ ସଚେତନ କରି ନ ଦେଲେ ସେ ସେହିପରି ଅଜ୍ଞାନ ହୋଇ ରହିଥିବ । ଯଦି ଆପଣଙ୍କର କୌଣସି ଆପତ୍ତି ନ ଥାଏ ତ ମୁଁ ଆମର ପୁରୋହିତଙ୍କୁ ଆପଣଙ୍କ ଘରକୁ ପଠାଇବି ସମ୍ବନ୍ଧ କରିବା ପାଇଁ । ଆପଣଙ୍କ ସହିତ ସମ୍ବନ୍ଧ କରି ମୁଁ ଅତି ଆନନ୍ଦିତ ହେବି ।"

ସମ୍ବନ୍ଧ କରିବା ବ୍ୟକ୍ତିଟି ତାଙ୍କ କଥା ମାନି ନେଲେ । ଦୁହେଁ ଖୁସି ହୋଇଗଲେ । କ୍ରମେ ଜମିଦାରଙ୍କୁ ଲୋକେ ବୋକା ଜମିଦାର କହିବା ଅଭ୍ୟାସ ଛାଡ଼ିଦେଲେ ।





# ବିଦୂଷକର ଗଣିତ

କାଞ୍ଚନଗିରିର ରାଜା କନକାଦିତ୍ୟ ନିଜ ରାଜ୍ୟର ବିକାଶ ନିମନ୍ତେ ଗୋଟିଏ ନୂଆ ବିଭାଗ ଖୋଲିଲେ । ତା'ର ନାମ ଦେଲେ ବିକାଶ ବିଭାଗ । କେଉଁଠି ରାସ୍ତା ଦରକାର, କେଉଁଠି କୂଅ ବା ପୋଖରୀ ଦରକାର, କେଉଁଠାରେ ନଈରୁ ନାଳଟିଏ ଖୋଳା ହୋଇ ଜମିଜମା ଭିତରକୁ ନିଆହେବା ଦରକାର, ଏହିସବୁ ବିଷୟର ବ୍ୟବସ୍ଥା କରିବା ଏ ବିଭାଗର କାମ ହେବ ବୋଲି ସେ ସ୍ଥିର କଲେ ।

କିନ୍ତୁ ସମସ୍ୟା ହେଲା, ଏ ବିଭାଗ କାହା ଦାୟିତ୍ୱରେ ରଖିବେ? ସେ ନିଜ ଅମାତ୍ୟମାନଙ୍କ ଯୋଗ୍ୟତା ଓ ଦକ୍ଷତା ବିଚାର କରି ଦେଖିଲେ ମାଧବ, ମୋହନ ଏବଂ ମୁରାରି ନାମକ ତିନିଜଣ ଅମାତ୍ୟ ବିକାଶମୂଳକ କାର୍ଯ୍ୟରେ ବିଶେଷ ଉତ୍ସାହ ଦେଖାଇଥାନ୍ତି । ତିନିହେଁ ବୁଦ୍ଧିମାନ ଓ କାର୍ଯ୍ୟଦକ୍ଷ ।

ରାଜା ତିନିଜଣଙ୍କୁ ଡାକି ବିଭାଗର ଦାୟିତ୍ୱ ଦେଲେ । ସେ କହିଲେ, "ଏହା ଏଡ଼େ ଗୁରୁତର ବିଭାଗ ଯେ ଜଣକୁ ନଦେଇ ତିନିଜଣଙ୍କ ଉପରେ ମୁଁ ଦାୟିତ୍ୱ ନ୍ୟସ୍ତ କଲି । ବିକାଶ କାର୍ଯ୍ୟ କ୍ଷିପ୍ର ଗତିରେ ଚାଲିବ ।"

ତିନି ଅମାତ୍ୟ ଆନନ୍ଦରେ ଦାୟିତ୍ୱ ନେଲେ ।

କାଞ୍ଚନଗିରିର ରାଜା ଏଭଳି ଗୋଟିଏ ବିଭାଗ ଖୋଲିବାର ଜାଣି ପଡ଼ୋଶୀ ମହେନ୍ଦ୍ରପୁରର ରାଜା ମଧ୍ୟ ସେହିଭଳି ଗୋଟିଏ ବିଭାଗ ଖୋଲିଲେ । ସେ ଜଣେ ସୁଦକ୍ଷ ଅମାତ୍ୟ ସୁନ୍ଦରସେନଙ୍କ ଉପରେ ବିଭାଗର ଦାୟିତ୍ୱ ଦେଲେ । ବର୍ଷଟିଏ ବିତିଗଲା । କାଞ୍ଚନଗିରିର ରାଜା ଦେଖିଲେ, ମହେନ୍ଦ୍ରପୁରରେ ଯେପରି କ୍ଷିପ୍ର ଗତିରେ ବିକାଶ କାର୍ଯ୍ୟ ଚାଲିଛି, ତାଙ୍କ ରାଜ୍ୟରେ ତା' ତୁଳନାରେ କିଛି କାମ ହେଉନାହିଁ କହିଲେ ଚଳେ । ସେ ଆଶ୍ଚର୍ଯ୍ୟ ହେଲେ ।

ସୁରେନ୍ଦ୍ରନାଥ



କାରଣ ମହେନ୍ଦ୍ରପୁରରେ ସେଭଳି ବଜାର କାଞ୍ଚନଗିରିରେ ଖୋଲା ହେବାର ମାସକ ପରେ ଯାଇ ଖୋଲା ହେଲା । ପୁଣି ତାଙ୍କ ରାଜ୍ୟରେ ବଜାରର ଦାୟିତ୍ୱ ତିନିଜଣ ଦକ୍ଷ ଲୋକଙ୍କ ହାତରେ ଥିବା ସ୍ଥଳେ ମହେନ୍ଦ୍ରପୁରରେ ମାତ୍ର ଜଣେ ବ୍ୟକ୍ତି ସେ ଦାୟିତ୍ୱରେ ଅଛନ୍ତି । ସେ ଏଥିରେ ବଡ଼ ମନ ଖରାପ କଲେ ।

ଦିନେ ତାଙ୍କ ବିଦୂଷକ ରଙ୍ଗନାଥ ତାଙ୍କୁ ପଚାରିଲା, "ମହାରାଜ, ଆପଣ ଚିନ୍ତିତ କିଆଁ ?"

"ରଙ୍ଗ! ମୋର ଦୁଃଖର କାରଣ ହେଲା, ଆମର ତିନିଜଣ ଅମାତ୍ୟ ମହେନ୍ଦ୍ରପୁରର ଜଣେ ଅମାତ୍ୟର ସରି ନୁହେଁ । କାଲି ଯଦି ମହେନ୍ଦ୍ରପୁର ଆମର ଶତ୍ରୁ ହେବ ଓ ଆମ ରାଜ୍ୟ ଆକ୍ରମଣ କରିବ, ତେବେ ଆମର ଅବସ୍ଥା କ'ଣ ହେବ ?" ରାଜା କହିଲେ ।

"ମହାରାଜ, ଆପଣଙ୍କର ଏଭଳି ଚିନ୍ତା ଅମୂଳକ । ଆପଣ ବିକାଶ ବଜାର କଥା ଭାବୁଛନ୍ତି ତ? ମୁଁ ଯୋର୍ ଦେଇ କହୁଛି, ଆମର ମାଧବ, ମୋହନ ବା ମୁରାରି—ଏମାନଙ୍କ ଭିତରୁ ଯେ କୌଣସି ଜଣେ ସୁନ୍ଦରସେନ ତୁଳନାରେ ଦୁଇଗୁଣ ଦକ୍ଷ । ଏମାନଙ୍କ ଭିତରୁ ଯେ କୌଣସି ଦୁଇଜଣ ମିଶିଲେ ସୁନ୍ଦରସେନର ସମକକ୍ଷ ହେବେ । ଏମାନେ ତିନିଜଣ ଏକତ୍ର ସୁନ୍ଦରସେନର ଅଧା ।" ବିଦୂଷକ ମନ୍ତବ୍ୟ ଦେଲା ।

ରାଜା କାବା ହୋଇ ବିଦୂଷକ ଆଡ଼େ ଅନାଇ କହିଲେ, "ରଙ୍ଗ! ତୋର ଜ୍ଞାନ-ଗରିମା ଉପରେ ଯେ ମୋର ଅତି ବେଶି ଆସ୍ଥା ଥିଲା, ତାହା ନୁହେଁ । କିନ୍ତୁ ତୁ ଗଣିତ ଶାସ୍ତ୍ରରେ ଏଡ଼େ ବୁଦ୍ଧୁ ବୋଲି ମୁଁ ଜାଣି ନଥିଲି । ଆମର ଯେ କୌଣସି ଜଣେ ଅମାତ୍ୟ ଯଦି ସୁନ୍ଦରସେନଠୁଁ ଦୁଇଗୁଣ ଦକ୍ଷ, ଦୁଇଜଣ ମିଶିଲେ ତା'ର ସମକକ୍ଷ ଓ ତିନିଜଣ ମିଶିଲେ ତା'ର ଅଧା ହେବେ କେଉଁ ହିସାବରେ ?"

"ମହାରାଜ! ଗଣିତ ଶାସ୍ତ୍ରରେ ମୁଁ ନିପୁଣ ।" ବିଦୂଷକ ଜବାବ ଦେଲା ।

"ଦେଖ ରଙ୍ଗ, ତୋ ମୁଣ୍ଡ ଖରାପ । ମୋ ମୁଣ୍ଡ ଖରାପ କରିବାକୁ ଚେଷ୍ଟା କରନା ।" ରାଜା ଗମ୍ଭୀର ସ୍ୱରରେ କହିଲେ ।

"ମହାରାଜ! ମୋ କଥା ଟିକିଏ ଶୁଣନ୍ତୁ।"

"ହଉ କହ।"

"ମହାରାଜ, ଆପଣ ଆମର ତିନି ଅମାତ୍ୟଙ୍କୁ ଭଲ ଭାବରେ ଜାଣିଛନ୍ତି। ପ୍ରତ୍ୟେକେ ବୁଦ୍ଧିମାନ ଓ ନିଷ୍ଠାପର। କିନ୍ତୁ ପ୍ରତ୍ୟେକଙ୍କର ଚିନ୍ତା ଧାରା ସ୍ୱତନ୍ତ୍ର। ତିନିହେଁ ଏକା ବିଭାଗରେ ଥିବାରୁ ଜଣକ ଯୋଜନା ଆଉ ଜଣେ ବାତିଲ୍ କରି ଦେଉଛି—ତା' ନିଜ ଯୋଜନାକୁ ଭଲ ବୋଲି ଭାବି। ତୃତୀୟ ଜଣକ ଆଜି ୟା' କଥାକୁ ସମର୍ଥନ କରୁଛି ତ କାଲି ତା' କଥାକୁ ସମର୍ଥନ କରୁଛି। ଫଳରେ ତିନିହେଁ ମିଶି ସୁନ୍ଦରସେନର ଅଧା କାମ କରୁଛନ୍ତି। ଆପଣ ଯଦି ତିନିଜଣ ନ ରଖି ଦୁଇଜଣ ରଖନ୍ତେ, ତେବେ ଦୁହେଁ ପରସ୍ପର ଭିତରେ ଯୁକ୍ତିତର୍କ କରି ଅଥବା ସାଲିସ୍ ଦ୍ୱାରା କିଛି ନା କିଛି କାମ କରନ୍ତେ ଓ ଦୁହେଁ ମିଶି ସୁନ୍ଦରସେନର ସମକକ୍ଷ ହୁଅନ୍ତେ। ଯଦି ଜଣକୁ ମୁଖ୍ୟ କରି ଅନ୍ୟ ଦୁଇଜଣକୁ ତାଙ୍କ ସହକାରୀ କରି ଦିଅନ୍ତେ, ତେବେ ମୁଖ୍ୟଙ୍କ ନିର୍ଦ୍ଦେଶ ଅନ୍ୟ ଦୁହେଁ କାର୍ଯ୍ୟକାରୀ କରନ୍ତେ ଓ କ୍ଷିପ୍ର ଗତିରେ କାମ ଚାଲନ୍ତା। ସେ କ୍ଷେତ୍ରରେ ଆମର ଯେ କୌଣସି ଜଣେ ଅମାତ୍ୟ ସୁନ୍ଦରସେନ ତୁଳନାରେ ଦୁଇଗୁଣ ଦକ୍ଷତା ଦେଖାଇ ପାରନ୍ତେ।"

ରାଜା ନୀରବ ରହିଲେ। କିଛି ସମୟ ପରେ ସେ ହସିଲେ ଓ କହିଲେ, "ଆଚ୍ଛା, ତୋ କଥା ଅନୁସାରେ କାମ କରି ଦେଖିବା।"

ରାଜା ସେହିଦିନ ମାଧବକୁ ଛାଡି ଅନ୍ୟ ଦୁଇଜଣଙ୍କୁ ଆଉ ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଭାଗକୁ ବଦଳାଇ ଦେଲେ। ତିନିମାସ ଭିତରେ ସୁଫଳ ଦେଖାଗଲା। ବିକାଶ କାର୍ଯ୍ୟ କ୍ଷିପ୍ର ହେଲା।

"ରଙ୍ଗ! ତୋ'ର ଗଣିତ ଜ୍ଞାନ ଯଥେଷ୍ଟ ଅଛି। କିନ୍ତୁ ତାହାଠୁଁ ବେଶି ଅଛି ମନସ୍ତତ୍ତ୍ୱ ଜ୍ଞାନ।" ରାଜା ହସେ ତାଙ୍କ ବିଦୂଷକର ପିଠି ଥାପୁଡ଼େଇ ଦେଇ କହିଲେ।



# ସବୁଠୁଁ ସୁନ୍ଦର ବସ୍ତୁ !

ଅବନ୍ତୀର ରାଜକୁମାରୀ ଅସାମାନ୍ୟା ସୁନ୍ଦରୀ ଥିଲେ । ତାଙ୍କୁ ଅନେକେ ବାହା ହେବାକୁ ଚାହୁଁ ଥିଲେ ।

କିନ୍ତୁ ରାଜକୁମାରୀ ଗୋଟିଏ ସର୍ତ୍ତ ଘୋଷଣା କଲେ : ଯିଏ ସବୁଠୁଁ ସୁନ୍ଦର ବସ୍ତୁର ଚିତ୍ର ଅଙ୍କନ କରିପାରିବ, ସେ ତାଙ୍କୁ ବାହା ହେବେ । କେତେ ରାଜ୍ୟର କେତେ ରାଜପୁତ୍ର କେତେ ପ୍ରକାର ଚିତ୍ର ଆଣି ତାଙ୍କୁ ଦେଖାଇଲେ । କିନ୍ତୁ କେହି ତାଙ୍କର ମନୋନୀତ ହେଲେ ନାହିଁ । ଅବଶେଷରେ ମଗଧର ରାଜକୁମାର ଗୋଟିଏ ଚିତ୍ର ଆଣି ଦେଖାଇଲେ । ରାଜକୁମାରୀ ସେ ଚିତ୍ର ପ୍ରତ୍ୟାଖ୍ୟାନ କଲେ ନାହିଁ । ଅର୍ଥାତ୍ ତାହା ସବୁଠୁଁ ସୁନ୍ଦର ବସ୍ତୁର ଚିତ୍ର ବୋଲି ସେ ଗ୍ରହଣ କଲେ । ଫଳରେ ମଗଧର ରାଜକୁମାରଙ୍କ ସହ ତାଙ୍କର ବିବାହ ହୋଇଗଲା ।

ମଗଧର ରାଜକୁମାର ଅବନ୍ତୀ-ରାଜକୁମାରୀଙ୍କର ପ୍ରତିକୃତିହିଁ ଅଙ୍କନ କରିଥିଲେ ।

ଦିନେ ରାଜକୁମାରୀ ତାଙ୍କୁ ପଚାରିଲେ, "ତୁମେ କେମିତି ଜାଣିଲ ଯେ ମୁଁ ସବୁଠାରୁ ସୁନ୍ଦରୀ ?"

ରାଜକୁମାର ଉତ୍ତର ଦେଲେ, "ସତ କଥା କହିଲେ, ମୁଁ ତାହା ଜାଣେନା । ପୃଥିବୀ-ଯାକର ସବୁ କନ୍ୟାଙ୍କୁ ତ ମୁଁ ଆଉ ଦେଖିନାହିଁ ! ମୋ ଜାଣିବାରେ ତୁମେ ସବୁଠୁଁ ସୁନ୍ଦରୀ । କିନ୍ତୁ ତୁମେ ଯଦି କମ୍ ସୁନ୍ଦରୀ ବି ହୋଇଥାନ୍ତ, ତେବେ ବି ତୁମ ପ୍ରତିକୃତିକୁ ସବୁଠୁଁ ସୁନ୍ଦର ବସ୍ତୁର ଚିତ୍ର ବୋଲି କହି ମୁଁ ଦେଖାଇଥିଲେ ତୁମେ ଖୁସି ହୋଇ ଯାଇଥାନ୍ତ !"

ରାଜକୁମାରୀ ଲଜ୍ଜାରେ ନୀରବ ରହିଲେ ।





# ମାହୁନ୍ତର ଭାଗ୍ୟ

ଯେତେବେଳେ ରାଜା ବ୍ରହ୍ମଦତ୍ତ ବାରାଣସୀ ନଗରୀରେ ଶାସନ କରୁଥିଲେ, ସେତେବେଳେ ବୋଧିସତ୍ତ୍ୱ ଜଣେ ସନ୍ନ୍ୟାସୀ ରୂପରେ ନଗରୀ ପାଖରେ ଥିବା ଗୋଟିଏ ବଣରେ ବାସ କରୁଥିଲେ ।

ଦିନେ ବୋଧିସତ୍ତ୍ୱ ନଗରୀ ଭିତରକୁ ଚାଲି ଆସିଲେ । ରାଜାଙ୍କ ମାହୁନ୍ତ ତାଙ୍କୁ ଦେଖି ନିଜ ଘରକୁ ପାଛୋଟି ନେଲା । ମାହୁନ୍ତଟି ଅତ୍ୟନ୍ତ ସତ୍ ଓ ଧର୍ମପ୍ରାଣ ଲୋକ ଥିଲା । ସେ ବୋଧିସତ୍ତ୍ୱଙ୍କୁ କିଛିଦିନ ତା' ଘରେ ଅତିଥି ହୋଇ ରହିବାକୁ ଅନୁରୋଧ କଲା ।

ବୋଧିସତ୍ତ୍ୱ ସେ ଅନୁରୋଧ ରକ୍ଷା କରି କିଛିଦିନ ତା' ଘରେ ରହିଲେ ଏବଂ ବିଦାୟ ନେବା ବେଳେ ମାହୁନ୍ତକୁ ତା' ଅଜାଣତରେ ଆଶୀର୍ବାଦ ଦେଇଗଲେ ।

ଏହାର କିଛିଦିନ ପରର କଥା । ବାରାଣସୀର ଅଦୂରରେ ଗୋଟିଏ ଗାଁରେ ଜଣେ କାଠୁରିଆ ଥାଏ । ଦିନେ ଚନ୍ଦନକାଠ ଖୋଜିବାକୁ ସେ ବହୁ ଦୂରକୁ ଚାଲିଗଲା । ରାତି ହୋଇଯିବାରୁ ଘରକୁ ଫେରି ନପାରି ବଣ ପାଖରେ ଥିବା ଗୋଟିଏ ମନ୍ଦିର ଚଟାଣରେ ଶୋଇପଡ଼ିଲା ।

ପାଖରେ ଗୋଟାଏ ଗଛ ଉପରେ ଦୁଇଟି ଡାଳରେ ଦୁଇଟି କୁକୁଡ଼ା ନିଦରେ ଶୋଇ ପଡ଼ିଥାନ୍ତି । ଉପର ଡାଳର କୁକୁଡ଼ା ମଝି ରାତିରେ ହଠାତ୍ ନିଜ ଡେଣା ଝାଡ଼ିବାକୁ ଆରମ୍ଭ କଲା ଓ ଫଳରେ ଶୁଖିଲା କାଠି ଓ ପତ୍ର ଆସି ତଳଡାଳରେ ଶୋଇଥିବା କୁକୁଡ଼ା ଉପରେ ପଡ଼ିଲା । ତଳ କୁକୁଡ଼ା ରାଗିଯାଇ କହିଲା, "ହେଇଟି ଦୁଷ୍ଟ! ତୋର ଏଡ଼େ ସାହସ ମୋ ନିଦ ଭଙ୍ଗାଉଛୁ!"



"କାହିଁକି ତୁ ଏମିତି କଏ କି? ତୁ ଯେପରି ଗୋଟାଏ ବଣୁଆ କୁକୁଡ଼ା, ମୁଁ ବି ସେମିତି ବଣୁଆ କୁକୁଡ଼ା। ଏତେ ଢମାକ୍ ଦେଖାଉଛୁ କାହିଁକି?" ଉପର କୁକୁଡ଼ା ତାଚ୍ଛଲ୍ୟ କରି କହିଲା।

"ମୋ ଗୁଣ ତୁ କ'ଣ ଜାଣୁ? ଯଦି କେହି ମୋ ମାଂସ ଖାଇବାର ସୁଯୋଗ ପାଇବ, ତେବେ ସେ କୋଟିପତି ହୋଇଯିବ। ବୁଝିଲୁ?" ତଳ ଡାଳର କୁକୁଡ଼ା କହିଲା।

"ଓ ଏଇକଥା? ମୋ ଗୁଣ ଆଗରେ ତୋ ଗୁଣ ତେବେ କେତେ? ଯିଏ ପ୍ରଭାତରେ ନଦୀରେ ସ୍ନାନ କରି ସଙ୍ଗେ ସଙ୍ଗେ ମୋ ମାଂସ ଖାଇବାର ସୁଯୋଗ ପାଇବ, ସେ ରାଜା ହୋଇଯିବ, ବୁଝିଲୁ?" ଉପର କୁକୁଡ଼ା କହିଲା।

ତଳେ ଚେଇଁକରି ଶୋଇଥିବା କାଠୁରିଆ ଦୁଇ କୁକୁଡ଼ାଙ୍କର ଏ କଥାବାର୍ତ୍ତା ଶୁଣିଲା। ସେ ଆଉ ଶୋଇବ କ'ଣ? ଉଠି ବସି ଅପେକ୍ଷା କଲା। ଯେତେବେଳେ ବୁଝିଲା ଯେ ଦୁଇ କୁକୁଡ଼ା ପୁଣି ଶୋଇ ପଡ଼ିଲେଣି, ସେତେବେଳେ ସେ ଧିରେ ଧିରେ ଗଛ ଚଢ଼ିଲା। କୋଟିପତି ହେବା ଅପେକ୍ଷା ରାଜା ହେବା ଶ୍ରେୟସ୍କର ଜାଣି ସେ ଉପର ଡାଳରେ ଥିବା କୁକୁଡ଼ାକୁ ଖପ୍‌କିନା ମାଡ଼ି ବସିଲା ଓ ତାକୁ ଧରି ତଳକୁ ନେଇ ଆସି ଘରମୁହାଁ ଚାଲିଲା।

ରାତିର ଶେଷ ପ୍ରହରରେ ସେ ଘରେ ପହଞ୍ଚି ତା' ସ୍ତ୍ରୀକୁ କହିଲା, "ତମେ ରାଣୀ ହେବାକୁ ଯାଉଛ!"

"ଏତେ ରାତିଯାଏ ବାହାରେ ରହି ମାତାଲ୍‌ଙ୍କ ଭଳି କଥାବାର୍ତ୍ତା କ'ଣ କରୁଛ? ମୁଁ କାଠୁରିଆର ସ୍ତ୍ରୀ ଏବଂ ସେଥିପାଇଁ ମୋର ତିଳେ ବି ଦୁଃଖ ନାହିଁ।" ତା' ସ୍ତ୍ରୀ ଉତ୍ତର ଦେଲା।

କାଠୁରିଆ ହସି ହସି ସବୁ କଥା କହିଲା ଓ ସଙ୍ଗେ ସଙ୍ଗେ ଚୁଲ୍ ଲଗାଇ କୁକୁଡ଼ା ମାଂସ ରାନ୍ଧିବାକୁ ବରାଦ କଲା। ରନ୍ଧା ଶେଷ ହେବା ମାତ୍ରେ ତାକୁ ଗୋଟାଏ ପାତ୍ରରେ ରଖି ତହିଁ ଉପରେ ଢାଙ୍କୁଣି ଦେଇ ଉଭୟେ ନଈ ଆଡ଼େ ଚାଲିଲେ। ନଈକୂଳରେ ତାକୁ ରଖି ଦୁହେଁ

ଗାଧୋଇଗଲେ । ପ୍ରଭାତ ହୋଇ ଆସୁଥାଏ । ହଠାତ୍ ନଦୀରେ ବନ୍ୟା ଆସିଗଲା । ଦୁହେଁ କୂଳକୁ ଉଠିବା ବେଳକୁ ମାଂସଭର୍ତ୍ତି ପାତ୍ର ଭାସି ଗଲାଣି ।

"ହାୟ, ଆମ ଭାଗ୍ୟରେ ରାଜତ୍ୱ ଭୋଗ ଥିଲେ କି ଏପରି ହୋଇଥାନ୍ତା ?" ଏହା କହି ମନଦୁଃଖରେ ଦୁହେଁ ଘରକୁ ଫେରିଗଲେ ।

ସେଠାରୁ କିଛି ଦୂରରେ ରାଜାଙ୍କ ମାହୁନ୍ତ ତା' ହାତୀକୁ ଗାଧୋଇଦେଇ କୂଳକୁ ଉଠିବାକୁ ଯାଉଛି, ଭାସମାନ ପାତ୍ରଟି ତା' ଆଖିରେ ପଡ଼ିଲା । ସେ ତାକୁ ଉଠାଇନେଇ ଦେଖେ ତ ଭିତରେ ସଦ୍ୟ ରନ୍ଧା ହୋଇଥିବା ମାଂସ । ନଦୀ କୂଳରେ କାହାର ଶିବିରରୁ ବନ୍ୟା ଏହାକୁ ଭସାଇ ଆଣିଛି ବୋଲି ସେ ଲୁଟିନେଲା ଓ କୂଳରେ ବସି ଆନନ୍ଦରେ ତାକୁ ଖାଇଲା ।

ଏହାର ଅଳ୍ପ କେତେଦିନ ପରେ ହଠାତ୍ ବାରାଣସୀ ଉପରେ ଶତ୍ରୁ ପକ୍ଷ ଚଢ଼ଉ କଲେ । ଯୁଦ୍ଧ ସକାଶେ ରାଜା ପ୍ରସ୍ତୁତ ନଥିଲେ । ତଥାପି ସୈନ୍ୟମାନଙ୍କୁ ଠୁଳ କରି ସେ ଯୁଦ୍ଧ କଲେ । ତାଙ୍କୁ ହତ୍ୟା କରିବା ଶତ୍ରୁପକ୍ଷର ଉଦ୍ଦେଶ୍ୟ ବୋଲି ଗୁପ୍ତଚର ପାଖରୁ ଖବର ପାଇ ସେ ନିଜ ମାହୁନ୍ତକୁ ରାଜବେଶ କରି ହାତୀରେ ବସାଇଲେ ଓ ନିଜେ ମାହୁନ୍ତ ରୂପେ ବସି ହାତୀକୁ ଚାଳନା କଲେ ।

ଶତ୍ରୁପକ୍ଷ ଦେଖିଲେ ମାହୁନ୍ତ ଅତି ବିଚକ୍ଷଣ ଭାବରେ ଓ ସାହସର ସହିତ ହାତୀକୁ ଚାଳନା କରୁଛି । ମାହୁନ୍ତକୁ ମାରିଦେଲେ ରାଜା



ଶକ୍ତିହୀନ ହୋଇ ପଡ଼ିବେ ଭାବି ସେମାନେ ମାହୁନ୍ତ-ରୂପୀ ରାଜାଙ୍କ ଆଡ଼େ ତୀର ନିକ୍ଷେପ କଲେ । ରାଜା ମରିଗଲେ ।

ବାରଣସୀର ସୈନ୍ୟମାନେ ରାଜା ମରିଗଲେ ବୋଲି ଜାଣିଥିଲେ ଛତ୍ରଭଙ୍ଗ ହୋଇଥାନ୍ତେ । କିନ୍ତୁ ସେମାନେ ତ ଭାବିଲେ ମାହୁନ୍ତ ମରିଛି । ରାଜା ଠିକ୍ ଅଛନ୍ତି ।

ରାଜା-ରୂପୀ ମାହୁନ୍ତ ଦେଖିଲା ଜୟ ପରାଜୟ ବର୍ତ୍ତମାନ ପୂରାପୂରି ତାହାର ଉପରେ ନିର୍ଭର କରେ । ସେ ପ୍ରବଳ ପରାକ୍ରମରେ ଯୁଦ୍ଧ କଲା । ରାଜା ମରିଗଲେଣି ବୋଲି ତ କେହି ଜାଣି ନଥିଲେ, ଅତଏବ ସୈନ୍ୟମାନେ ରାଜା-ବେଶଧାରୀ ମାହୁନ୍ତର ଉତ୍ସାହ ଦେଖି ପ୍ରାଣମୂର୍ଚ୍ଛା ଲଢ଼େଇ କଲେ । ଶତ୍ରୁ ପକ୍ଷର ସେନାପତି ହଠାତ୍ ଘୋଡ଼ାରୁ ପଡ଼ିଗଲେ । ତାହା ଦେଖି ଶତ୍ରୁ ବାହିନୀ ଛତ୍ରଭଙ୍ଗ ହେଲେ । ଥୋକେ ମଲେ; ଅଧିକାଂଶ ବନ୍ଦୀ ହେଲେ । ଯୁଦ୍ଧରେ ବାରଣସୀର ଜୟ ହେଲା ।

ସେତେବେଳକୁ ଯାଇ ଜଣାଗଲା କି ଜୟ ସିନା ହେଲା, ରାଜା କିନ୍ତୁ ପ୍ରାଣରେ ନାହାନ୍ତି । ରାଜାଙ୍କର ସନ୍ତାନ ନଥିଲେ । ରାଜା ହେବ କିଏ ?

ପ୍ରଧାନମନ୍ତ୍ରୀ କହିଲେ, "ମାହୁନ୍ତ ମୁଣ୍ଡରେ ସ୍ୱୟଂ ରାଜା ମୁକୁଟ ଥାପିଥିଲେ । ମାହୁନ୍ତକୁ ସ୍ୱୟଂ ରାଜା ରାଜପୋଷାକ ଦେଇଥିଲେ । ଏହାକୁ ବିଧି-ନିର୍ଦ୍ଦିଷ୍ଟ ବୋଲି ଧରିନେବା କଥା । ଦ୍ୱିତୀୟରେ ମାହୁନ୍ତ ଯଦି ସାହସର ସହ ନେତୃତ୍ୱ ଦେଇ ନଥାନ୍ତା, ତେବେ ଆମ ପକ୍ଷର ପରାଜୟ ହୋଇଥାନ୍ତା ଓ ଆମେ ସମସ୍ତେ ମରିଥାନ୍ତୁ ନଚେତ୍ ବନ୍ଦୀ ହୋଇଥାନ୍ତୁ । ଅତଏବ ମାହୁନ୍ତହିଁ ସିଂହାସନରେ ବସିବାର ଯୋଗ୍ୟ ବୋଲି ମୁଁ ମନେ କରେଁ ।"

ପ୍ରଧାନମନ୍ତ୍ରୀଙ୍କ ଏ ମତକୁ ସମସ୍ତେ ଆନନ୍ଦରେ ଗ୍ରହଣ କଲେ । ରାଜା ରୂପେ ମାହୁନ୍ତର ଅଭିଷେକ ହେଲା ।

ଏହିପରି ଭାବରେ ବୋଧିସତ୍ତ୍ୱଙ୍କ ଆଶୀର୍ବାଦ ମାହୁନ୍ତର ଭାଗ୍ୟ ବଦଳାଇଦେଲା ।





ଭାରତ-କାହାଣୀ

# ଛତ୍ରପତି ଶିବାଜୀ-୨

ଶିବାଜୀ ମୋଗଲ କବଳରୁ ଖସି ଆସିବା ଫଳରେ ମାରାଠାମାନଙ୍କ ଭିତରେ ଆନନ୍ଦ ଉତ୍ସାହର ଲହରୀ ଖେଳିଗଲା । ୧୬୭୪ ମସିହାରେ ଶିବାଜୀ ଛତ୍ରପତି ଉପାଧି ଧାରଣ କଲେ । ମାରାଠା-ମାନଙ୍କର ରାଜା ରୂପେ ତାଙ୍କର ଅଭିଷେକ ହେଲା ।

ଶିବାଜୀଙ୍କ ସାହସ ଓ ଉଜ୍ଜ୍ୱଳ ଚରିତ୍ର ମାରାଠାମାନଙ୍କୁ ବିପୁଳ ଉତ୍ସାହ ଦେଉଥାଏ । ସେମାନେ ତାଙ୍କ ସକାଶେ ନିଜର ପ୍ରାଣ ଦେବାକୁ ପ୍ରସ୍ତୁତ ଥିଲେ, ତାହାର ଏକ ଦୃଷ୍ଟାନ୍ତ ହେଲେ ବାଜି ପ୍ରଭୁ । ଥରେ ଶିବାଜୀଙ୍କୁ ଶତ୍ରୁ ହାତରୁ ଖସି ଯିବାର ସୁଯୋଗ ଦେବା ନିମନ୍ତେ ବୀର ବାଜିପ୍ରଭୁ ଗୋଟିଏ ସୁଡ଼ଙ୍ଗ ଦ୍ୱାରରେ ଏକାକୀ ଠିଆ ହୋଇ ଶତ୍ରୁମାନଙ୍କୁ ଅଟକାଇ ରଖି ଶେଷରେ ପ୍ରାଣ ଦେଲେ ।





ପରାଜିତ ଶତ୍ରୁ ପ୍ରତି ଶିବାଜୀ ସର୍ବଦା ସଦୟ ବ୍ୟବହାର କରୁଥିଲେ । ସେ ନିଜେ ନୈଷ୍ଠିକ ହିନ୍ଦୁ ଥିଲେ; କିନ୍ତୁ ଅନ୍ୟ ଧର୍ମ ପ୍ରତି ସେ ଗଭୀର ସମ୍ମାନ ଦେଖାଉଥିଲେ । ଥରେ ପରାସ୍ତ ଶତ୍ରୁ ମହଲରେ ସେ ଖଣ୍ଡିଏ କୋରାନ ଥିବାର ଦେଖି ସ୍ଥାନୀୟ ଜଣେ ମୁସଲମାନଙ୍କୁ ଡକାଇ ଶ୍ରଦ୍ଧା ଭରେ ସେ ଧର୍ମଗ୍ରନ୍ଥ ତାଙ୍କୁ ଉପହାର ଦେଲେ ।



କଲ୍ୟାଣ ଦୁର୍ଗର ଅଧିପତି ଅହ୍ମଦ୍ ଶିବାଜୀଙ୍କ ଦ୍ୱାରା ପରାଜିତ ହେଲେ । ତାଙ୍କର ସୁନ୍ଦରୀ କନ୍ୟାଙ୍କୁ କେତେଜଣ ଆମାତ୍ୟ ଶିବାଜୀଙ୍କୁ ଆଣି ଭେଟି ଦିଅନ୍ତେ ଶିବାଜୀ କହିଲେ, "ଆହା, ମୋ ମା ଯଦି ଏହିପରି ସୁନ୍ଦରୀ ହୋଇଥାନ୍ତେ, ତେବେ ମୁଁ ଦେଖିବାକୁ ଟିକିଏ ଭଲ ହୋଇଥାନ୍ତି !" ବାପା ଭଳି ଅନେକ ଉପହାର ସହ ଶିବାଜୀ ଝିଅଟିକୁ ଫେରାଇ ପଠାଇଲେ ।

ଧର୍ମକଥା ଶୁଣିବା ପାଇଁ ସର୍ବଦା ଆଗ୍ରହୀ ଶିବାଜୀ ଥରେ ଦଳେ ଶ୍ରୋତାଙ୍କ ଭିତରେ ବସି ସନ୍ଥ ତୁକାରାମଙ୍କ ପ୍ରବଚନ ଶୁଣୁଥିଲେ । ଶତ୍ରୁପକ୍ଷ ତାହା ଜାଣି ପାରି ତାଙ୍କୁ ଧରିବା ପାଇଁ ସେ ସ୍ଥାନ ଚୁରିପଟେ ଘେରିଗଲେ । ହଠାତ୍ ଦେଖାଗଲା ଶିବାଜୀଙ୍କ ଭଳି ଦିଶୁଥିବା ଜଣେ ଲୋକ ଦୌଡ଼ି ପଳାଉଛି । ଶତ୍ରୁମାନେ ତା' ପଛରେ ଦୌଡ଼ିଲେ । ଅସଲ ଶିବାଜୀ ନିରାପଦ ରହିଲେ ।





ଶିବାଜୀ ସନ୍ଥ ରାମଦାସଙ୍କର ଅତ୍ୟନ୍ତ ଅନୁରାଗୀ ଥିଲେ । ଶିବାଜୀଙ୍କ ଦ୍ୱାରା ଅନେକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ହେବାର ଅଛି ଜାଣି ରାମଦାସ ତାଙ୍କଠୁଁ ଦୂରେଇ ରହୁଥିଲେ । ଦିନେ ରାମଦାସ କାହାରି ଘର ଆଗରେ ଭିକ୍ଷା ମାଗୁଥିବାର ଜାଣି ଶିବାଜୀ ଖଣ୍ଡିଏ କାଗଜରେ ନିଜ ରାଜ୍ୟ ତାଙ୍କୁ ଦାନ କଲେ ବୋଲି ଲେଖି ଦେଇ ଦୌଡ଼ି ଆସି ରାମଦାସଙ୍କ ଭିକ୍ଷାପାତ୍ରରେ ତାହା ପକାଇ ଦେଲେ ।

ରାମଦାସ ତାଙ୍କ ତରଫରୁ ନ୍ୟାୟପୂର୍ଣ୍ଣ ଭାବରେ ରାଜ୍ୟ ଶାସନ କରିବାକୁ ଶିବାଜୀଙ୍କୁ ଆଦେଶ ଦେଲେ । ଶିବାଜୀ ଏହାପରେ ନାନା ଜନକଲ୍ୟାଣକର କାମରେ ହାତ ଦେଲେ । ସେ ମନ୍ଦିର ନିର୍ମାଣ କରିବା ସଙ୍ଗେ ସଙ୍ଗେ ମସ୍‌ଜିଦ୍‌ ନିର୍ମାଣ ପାଇଁ ମଧ୍ୟ ଦାନ କରୁଥିଲେ । ମୁସଲ୍‌ମାନ ଧର୍ମ ପ୍ରତି ତାଙ୍କର ବିଦ୍ୱେଷ ନଥିଲା । ଆଓରଂଜେବ୍‌ର ନିର୍ମମ ଧର୍ମାନ୍ଧତା ବିରୁଦ୍ଧରେ ସେ ଲଢୁଥିଲେ ।





ସତ୍‌ସାହସୀ, ମହାନ୍‌ ଓ ବୀର ଛତ୍ରପତି ଶିବାଜୀ ମହାରାଷ୍ଟ୍ରର ଜୀବନରେ ନୂତନ ପ୍ରଭାତ ଆଣି ୧୬୮୦ ଖ୍ରୀଷ୍ଟାବ୍ଦରେ ମାତ୍ର ୫୩ ବର୍ଷ ବୟସରେ ପ୍ରାଣତ୍ୟାଗ କଲେ । ତାଙ୍କ ମୃତ୍ୟୁରେ ଯେ କେବଳ ମାରାଠାମାନଙ୍କର କ୍ଷତି ହେଲା, ତାହା ନୁହେଁ, ଅଓରଂଜେବ୍‌ ଦ୍ୱାରା ନିର୍ଯାତିତ ସମଗ୍ର ଜନତା କ୍ଷତିଗ୍ରସ୍ତ ହେଲେ । ମୋଗଲମାନେ ଅବଶ୍ୟ ବହୁତ ଖୁସି ହୋଇଗଲେ ।

ଶିବାଜୀଙ୍କ ପରେ ରାଜା ହେଲେ ତାଙ୍କ ପୁତ୍ର ଶମ୍ଭୁଜୀ । ସେ ଯଥେଷ୍ଟ ପରାକ୍ରମ ଦେଖାଇ ମୋଗଲମାନଙ୍କୁ ସାମ୍‌ନା କଲେ ଓ ମହାରାଷ୍ଟ୍ର ସାମ୍ରାଜ୍ୟ ରକ୍ଷା କଲେ । ଆଓରଂଜେବ୍‌ ଶମ୍ଭୁଜୀଙ୍କୁ କୌଣସି ପ୍ରକାରେ ହରାଇ ଓ ହତ୍ୟା କରି ନିଶ୍ଚିନ୍ତ ହେବାକୁ ଚାହୁଁଥାନ୍ତି, କିନ୍ତୁ ମାରାଠାମାନେ ସମ୍ମିଳିତ ଭାବରେ ଶମ୍ଭୁଜୀଙ୍କ ନେତୃତ୍ୱରେ ମୋଗଲବାହିନୀର ପ୍ରତିରୋଧ କରୁଥାନ୍ତି ।





ପରେ ଶମ୍ଭୁଜୀ ଶୋଇଥିବା ଅବସ୍ଥାରେ ମୋଗଲ ସୈନ୍ୟମାନେ ତାଙ୍କୁ ବନ୍ଦୀ କଲେ । ବନ୍ଦୀ ଭାବରେ ତାଙ୍କୁ ଆଓରଂଜେବଙ୍କ ଆଗକୁ ଅଣାଗଲା । ଉପସ୍ଥିତ ହେବା ତ ଦୂରର କଥା, ସେହି ଅବସ୍ଥାରେ ସେ ଆଓରଂଜେବଙ୍କୁ ତାଚ୍ଛଲ୍ୟ କଲେ । କ୍ରୁଦ୍ଧ ଆଓରଂଜେବ ତାଙ୍କୁ ଯନ୍ତ୍ରଣା ଦେଇ ହତ୍ୟା କଲେ— ୧୬୮୯ ରେ ।

ଶମ୍ଭୁଜୀଙ୍କ ମୃତ୍ୟୁରେ ମାରାଠାମାନେ ଯେତେ ବିଚଳିତ ହେଲେ, ସେତିକି ଉତ୍ତ୍ୟକ୍ତ ହେଲେ । ମହାରାଷ୍ଟ୍ରର ସବୁଆଡ଼େ ସେମାନେ ମୋଗଲମାନଙ୍କୁ ହଇରାଣ କରିବାକୁ ଲାଗିଲେ । ଆଓରଂଜେବ୍ ଶତଚେଷ୍ଟା କରି ମଧ୍ୟ ମହାରାଷ୍ଟ୍ରର ବିଦ୍ରୋହୀମାନଙ୍କୁ ଦମନ କରି ପାରିଲେ ନାହିଁ । କ୍ରମେ ମୋଗଲ ଶକ୍ତି କ୍ଷୀଣ ହେବାକୁ ଲାଗିଲା ।





ଶିବାଜୀଙ୍କ ଅନ୍ୟ ପୁତ୍ର ରାଜାରାମ ମାରାଠାମାନଙ୍କ ନେତୃତ୍ୱ ନେଲେ ଓ ସତାରା ତଥା ଦାକ୍ଷୀଣ ଭାରତରେ ଜିଞ୍ଜି ଦୁର୍ଗକୁ କେନ୍ଦ୍ର କରି ମୋଗଲ-ବିରୋଧୀ ସଂଗ୍ରାମ ଚାଲୁ ରଖିଲେ । ୧୭୦୦ ମସିହାରେ ତାଙ୍କର ମୃତ୍ୟୁ ପରେ ତାଙ୍କ ପତ୍ନୀ ତାରାବାଈଙ୍କ ନେତୃତ୍ୱରେ ସଂଗ୍ରାମ ଚାଲିଲା । ଆଓରଂଜେବ୍ ଶାନ୍ତିରେ ରହିପାରିଲେ ନାହିଁ ।




# ଅପୂର୍ବ ଗଧ

କାଇରୋ ନଗରୀରେ ଥିଲା ଜଣେ ମହାଜନ । ସେ ଲୋକଙ୍କଠାରୁ ଅତି ଅଧିକ ମାତ୍ରାରେ ସୁଧ ନେଉଥାଏ । ଦୟାମାୟା ବୋଲି ଗୁଣ ତା' ହୃଦୟରେ ଟିକେ ବି ନଥାଏ ।

ମହାଜନ ନିଜକୁ ଅତ୍ୟନ୍ତ ଚତୁର ବୋଲି ଭାବୁଥାଏ । ସେ ଗର୍ବକରି କହୁଥାଏ, "ମୁଁ ଧନୀ ହୋଇଛି ମୋ ବୁଦ୍ଧିରୁ । କାହାରି ଦୟାରୁ ନୁହେଁ ।"

ତିନିଜଣ ଯୁବକ ଥରେ ମହାଜନକୁ ଉଚିତ ଶିକ୍ଷା ଦେବାକୁ ମନ କଲେ ।

ଦିନେ ମହାଜନ ତା' କାରବାର ଶେଷ କରି ଘର ଭିତରକୁ ଯିବାକୁ ବସିଛି, ଜଣେ ଯୁବକ ଗୋଟାଏ ଦୁର୍ବଳିଆ ଗଧ ଚଢ଼ି ତା' ପାଖରେ ପହଞ୍ଚିଲା ଓ କହିଲା, "ବାବୁ, ଗୋଟାଏ ସୁନା ମୋହର ଭଙ୍ଗାଇ ଦେବ? ମୋର ରେଜା ଦରକାର ।"

"ହଁ, ହଁ, ନ ଦେବି କଆଁ ? କିନ୍ତୁ ସେପାଇଁ ମୋତେ ବଟି ଦେବାକୁ ହେବ । ପାଞ୍ଚଭାଗ କାଟି ରଖିବି ।" ମହାଜନ କହିଲା । ଯୁବକ ସେଥିରେ ରାଜି ହେଲା । ମହାଜନ ସୁନା ମୋହରଟି ନେଇ ରେଜା ଗଣୁଛି, ସେତିକିବେଳେ ଆଉ ତିନିଜଣ ଯୁବକ ପହଞ୍ଚି ଯାଇ ପ୍ରଥମ ଯୁବକର ଗଧଟିକୁ ଭଲ କରି ଦେଖିବାକୁ ଲାଗିଲେ ।

ଜଣେ ଚପା କଣ୍ଠରେ କହିଲା, "ହଁ, ଏଇ ହେଲା ସେ ଗଧ । ଆଉ ବିଳମ୍ବ କରିବା ନାହିଁ । କିଣି ନେବା ।"

ଅନ୍ୟ ଜଣକ କହିଲା, "ନା, ବୋଧହୁଏ । ସେ ଗଧ ତ ଟିକଏ ବୁଢ଼ା ହେବା କଥା!"

"ତୁ ପାଟି କରନା । ଏଇଟା ସେ ଗଧ । ସନ୍ଦେହ ନାହିଁ । ନହେଲେ ଏହାକୁ ଧରି ସେ କାହିଁକି ବୁଲନ୍ତା?" ଅନ୍ୟ ଦୁଇଜଣ କହିଲେ ।



କ୍ରୁଦ୍ଧ ଭାବରେ ପ୍ରଥମ ଯୁବକ କହିଲା, "ଶୁଣ, ସତରେ ଯଦି ଗଧଟି କିଣିବାକୁ ଚାହିଁ, ତେବେ ଦଶହଜାର ମୋହର ଦେବାକୁ ପଡ଼ିବ। ଗୋଟାଏ ମୋହର କମ ହେଲେ ବି ମୁଁ ବିକିବି ନାହିଁ।"

ଅନ୍ୟ ତିନିଜଣ ଯୁବକ କହିଲେ, "ଆପଣ ଏମିତି କହିଲେ ହେବ? ଆଚ୍ଛା ହେଲା, ପାଞ୍ଚହଜାର ନିଅନ୍ତୁ। ଆଉ ଦ୍ୱିଧା କରନ୍ତୁ ନାହିଁ। ଏହାଠୁଁ ବେଶି ଆମ ପାଖରେ ନାହିଁ।"

"ଯଦି ନାହିଁ, ତେବେ ଗଧ କିଣିବାକୁ କାହିଁ ମନ ବଳାଇଛ? ମୁଁ ଦଶହଜାରରୁ କମରେ ଦେବି ନାହିଁ।" ରୋକଠୋକ୍ ଯୁବକ ଶୁଣାଇ ଦେଲା।

ମହାଜନ ସେମାନଙ୍କ କଥାବାର୍ତ୍ତା ଶୁଣି କୌତୁହଳୀ ହୋଇ ଦେଖୁଥାଏ। ସେ ତିନିଜଣ ପ୍ରଥମ ଯୁବକ ପାଖକୁ ଆସି କହିଲେ, "ମହାଶୟ, ଆପଣ ଏ ଗଧଟି ପାଇଁ କେତେ ଦାମ ନେବେ?"

ବିରକ୍ତ ହେବାର ଭଙ୍ଗୀ ଦେଖାଇ ପ୍ରଥମ ଯୁବକ କହିଲା, "କହୋ ବାବୁ, ମୁଁ ଗଧ ବିକିବି ବୋଲି ତମେ କାହିଁକି ଧରିନେଲ?"

କଣ୍ଠସ୍ୱର କୋମଳ କରି ଅନ୍ୟ ତିନିଜଣ କହିଲେ, "ମହାଶୟ, ଯୁକ୍ତି ତର୍କ କରି ଲାଭ ନାହିଁ। ଆପଣ ହଜାରେ ମୋହର ନିଅନ୍ତୁ। ଗଧଟି ଆମକୁ ଦେଇ ଦିଅନ୍ତୁ।"

ମହାଜନ ନିଜ କାନକୁ ବିଶ୍ୱାସ କରୁ ନଥାଏ। ଅତ୍ୟନ୍ତ ସୁସ୍ଥ ସବଳ ଗଧର ଦାମ ଆଠ ଦଶ ମୋହରରୁ ବେଶି ନୁହେଁ। ସେ ଦୁର୍ବଳିଆ ଗଧକୁ ଦୁଇ ତିନି ମୋହରରୁ ବେଶି ଦେଇ କେହି କିଣିବେ ନାହିଁ। ଏମାନେ କ'ଣ ପାଗଳ? ସେ ତିନି ଯୁବକଙ୍କୁ କହିଲା, "ବାବୁମାନେ, ତମର ଯଦି ଗଧ ଜରୁରୀ ଦରକାର, ମୋର ଯୋଡ଼ିଏ ଅଛନ୍ତି ନେଇଯାଅ। ମୁଁ ବେଶି ମୂଲ୍ୟ ଚାହୁଁ ନାହିଁ। ପାଞ୍ଚଶହ କରି ଦେଲେ ଚଳିବ।"

"ତମେ ନିଜକୁ ବହୁତ ବୁଦ୍ଧିମାନ ଭାବୁଛ ପରା!" ଯୁବକ ତିନିଜଣ ଏତକ ମନ୍ତବ୍ୟ ଦେଇ ମହାଜନର କଥା ପ୍ରତି କାନ ନ ଦେଇ

ପ୍ରଥମ ଯୁବକକୁ କହିଲେ, "ଆପଣ ଏତେ ଲୋଭୀ ହେବା ଉଚିତ ନୁହେଁ । ଛଅ ହଜାର ନିଅନ୍ତୁ । ଗଧ ଦେଇ ଦିଅନ୍ତୁ ।"

"କ'ଣ କହିଲ, ମୁଁ ଲୋଭୀ? ଯାଅ, ପଳାଅ । ତମେ ବର୍ତ୍ତମାନ ଦଶହଜାର ଦେଲେ ବି ମୁଁ ଗଧ ବିକିବି ନାହିଁ । ତମେମାନେ ବଡ଼ ନିର୍ଲୋଭୀ ଭାବରେ ଏ ଗଧ କିଣିବାକୁ ମନ ବଳାଇଛ ପରା! ଯାଅ—ମୋ ଆଗରୁ ଯାଅ କହୁଛି!" ପ୍ରଥମ ଯୁବକ ଉତ୍ତେଜିତ ହେଲା ।

ତିନି ଯୁବକ ଦୀର୍ଘନିଃଶ୍ୱାସ ଛାଡ଼ି ଗୋଟାଏ ଗଛ ମୂଳରେ ଯାଇ ବସିଲେ । ମହାଜନ ପ୍ରଥମ ଯୁବକକୁ କହିଲା, "ବାବୁ, କୌଣସି କାଳରେ ଗଧର ଦାମ ଦଶ ମୋହରରୁ ଅଧିକ ହେବାର ଶୁଣାଯାଇ ନାହିଁ । ତମେ ଛଅ ହଜାର ନେଇ ବିକି ଦିଅ ।"

ପ୍ରଥମ ଯୁବକ ମହାଜନ ଆଡ଼େ ଟିକିଏ ଚାହିଁ ରହି କହିଲା, "ତମେ ଏ ଗଧ ବିଷୟରେ କ'ଣ ଜାଣ? ଏହା ଏକ ଅପୂର୍ବ ଗଧ । ମଝି ରାତିରେ ଏହାକୁ ଛାଡିଦେଲେ ଇଏ ଯାଇ ଯୋଗାଧନ ପାଖରେ ପହଞ୍ଚିଯାଏ । ଏହାର ଏହି ଗୁଣ ଯୋଗୁଁ ସେମାନେ ଏତେ ମୂଲ୍ୟ ଦେଇ ଏହାକୁ କିଣିବାକୁ ତିଆର!"

ଏହାପରେ ଯୁବକଟି ଯାଇ ଗୋଟାଏ ଜଳଖିଆ ଦୋକାନରେ ବସିଲା । ଅନ୍ୟ ତିନି ଯୁବକ ସେତେବେଳେ ମହାଜନ ପାଖକୁ ଆସି କହିଲେ, "ଆଜ୍ଞା, ସେ ଗଧ ମାଲିକ ଆମ



ଉପରେ ଖପା ହୋଇଯାଇଛି । ଅବଶ୍ୟ ଆମର ଭୁଲ । ଆମେ ତାକୁ ଲୋଭୀ କହିବା ଉଚିତ ହୋଇନାହିଁ । ଆପଣ ଯଦି ଦଶହଜାର ଦେଇ ଗଧକୁ ତା'ଠୁଁ କିଣି ଆଣନ୍ତେ, ତେବେ ଆମେ ଆପଣଙ୍କଠାରୁ କିଣି ନିଅନ୍ତୁ ।"

"ମୋର କ'ଣ ଲାଭ ହେବ?" ମହାଜନ ପଚାରିଲା ।

ଯୁବକ ତିନିଜଣ ପରସ୍ପର ପରାମର୍ଶ କରି କହିଲେ, "ଆପଣଙ୍କୁ ଆମେ ଶହେ ମୋହର ଅଧିକା ଦେବୁଁ ।"

ମହାଜନ ମୃଦୁ ହସି ସେମାନଙ୍କୁ ଅପେକ୍ଷା କରିବାକୁ କହିଲା ଓ ସେ ଯୁବକ ପାଖକୁ ଯାଇ ଚୁପି ଚୁପି କଥାବାର୍ତ୍ତା କଲା । ଯୁବକ ତା'ଠୁଁ

ଦଶହଜାର ମୋହର ନେଇ ଗଧଟିକୁ ତାକୁ ଦେଇ ଗୁଲିଗଲା ।

ମହାଜନ ଗଧ ଧରି ଫେରିବାରୁ ଦେଖି ଆନନ୍ଦରେ ଯୁବକ ତିନିଜଣ ଦୌଡ଼ି ଆସି ମୋହର ଥଳି ବାହାର କରିବାକୁ ବସିଲେ ।

"ଶୁଣ । ତମେ ଯଦି ଏ ଗଧ ଗୁହଁ, ତେବେ କୋଡ଼ିଏ ହଜାର ମୋହର ଦିଅ । ସେଥିରୁ ଗୋଟିଏ ମୋହର କମ ହେଲେ ମୁଁ ଏ ଗଧ ଦେଉନାହିଁ ।" ମହାଜନ କଡ଼ା ଭାବରେ ଶୁଣାଇ ଦେଲା । ତିନି ଯୁବକ ବଜ୍ରାହତ ଭଳି ଠିଆ ହୋଇ ରହିଲେ ଓ କହିଲେ, "ଆମର ଦୁର୍ଭାଗ୍ୟ । ହେଉ, ଆପଣ ଗଧଟିକୁ ରଖନ୍ତୁ ।"

ସେମାନେ ଏତେ ଶୀଘ୍ର ହାଲ୍ ଛାଡ଼ିଦେବେ ବୋଲି ମହାଜନ କଳ୍ପନା କରି ନଥିଲା । ସେ କହିଲା, "ରୁହ, ରୁହ, ହଉ, ଅଠର ହଜାର ଦେଇ ନେଇଯାଅ ।"

ଯୁବକ ତିନିଜଣ ସେତେବେଳେ ପରସ୍ପର କହିବାର ଶୁଣାଗଲା, "ଆରେ ହେ, ଏ ଗଧ ତ ସେ ଗଧ ନୁହେଁ, କାରଣ ସେ ଗଧର ଲାଞ୍ଜ ତ ଅଧା କଳା ଅଧା ଧଳା । ଏଇଟା ତ ପୁରା କଳା ! ଗୁଲ, ଗୁଲ !"

ମହାଜନ ମୁଣ୍ଡରେ ଯେମିତି ଚଡ଼କ ପଡ଼ିଲା । ସେ ପାଟି କରି କହିଲା, "ଶୁଣ, ଶୁଣ । ସେଇ ଦଶହଜାର ଦେଇ ଗଧ ନେଇଯାଅ ।"

ଲୋକ ଜମା ହୋଇଗଲେ । ମହାଜନ କ'ଣ କହୁଛି ବୋଲି ସମସ୍ତେ ଆଶ୍ଚର୍ଯ୍ୟ ହେଲେ ।

"ଶୁଣ ସମସ୍ତେ, ଏ ଯୁବକମାନଙ୍କ କଥାରେ ମୁଁ ଦଶହଜାର ମୋହର ଦେଇ ଏ ଗଧ କିଣିଲି । ଏମାନେ ବର୍ତ୍ତମାନ ମୋଠୁଁ ନେଉ ନାହାନ୍ତି ।" ମହାଜନ ପାଟି କରି କହିଲା ।

"ମହାଜନ ପୁଅ! ଦଶହଜାର ଦେଇ କେହି ଗଧ କିଣେ ? ତମ ମୁଣ୍ଡ ଖରାପ ହେଲାଣି ନା କ'ଣ! ଗୁଲ ଗୁଲ, ଘରକୁ ଗୁଲ ।" ହସି ହସି ଲୋକେ ମହାଜନକୁ ତା' ଘର ଭିତରକୁ ଧରି ନେଇଗଲେ ।





# ବ୍ରହ୍ମରାକ୍ଷସୀର ଉପକାର

କମଲପୁର ନାମକ ଗ୍ରାମରେ ଜଣେ ଯୁବକ ରହୁଥାଏ । ତା' ନାମ ହେଉଛି ବୀରେଶ । ସେ ବହୁତ ବୁଦ୍ଧିମାନ୍ ଓ ସତ୍ ସ୍ୱଭାବର ଥିଲେ ମଧ୍ୟ ଖୁବ୍ ଅଳସୁଆ ଥିଲା । ତେଣୁ ଗରିବ ହୋଇ ରହିଥାଏ ।

ଘର ଜମି ବୋଲି ଗୋଟିଏ କୁଡ଼ିଆଘର ଓ ତା'ର ଗୃହପାଖରେ ଅଳ୍ପ କିଛି ଜମି ଥାଏ । ଯୌତୁକ ଦେବାରେ ଅସମର୍ଥ ଜଣେ ବ୍ୟକ୍ତି ତା' ଝିଅ ମୈଥିଳୀକୁ ବୀରେଶକୁ ବାହା ଦେଲା । ମୈଥିଳୀର ବିବାହ ପରେ ସେ ତା'ର ସ୍ୱାମୀର ଆଳସ୍ୟ ଦୂର କରିବା ପାଇଁ ନାନା ଉପାୟ କଲା । କିନ୍ତୁ କେଉଁଥିରେ ବି ତା'ର ପରିବର୍ତ୍ତନ ହେଲା ନାହିଁ । ମୈଥିଳୀ ନିଜେ ଚେଷ୍ଟା କରି ତା'ର କୁଡ଼ିଆ ଘର ଗୃହପଟରେ ବହୁତ ନଡ଼ିଆ ଗଛ ଓ ଅନ୍ୟାନ୍ୟ ଫଳ ପରିବା ସବୁ ଲଗାଇଲା ।

ନଡ଼ିଆ ଗଛରେ ଓ ଅନ୍ୟାନ୍ୟ ଗଛରେ କ୍ରମେ ଫଳ ଧରିଲା । ଫଳ ସବୁ ତୋଳି ସହରରେ ବିକ୍ରି କରିବା ପାଇଁ ସେ ବୀରେଶକୁ ପଠାଇଲା । ବୀରେଶ ଯିବାବେଳେ ମୈଥିଳୀ ତାକୁ ଡାକି କହିଲା, "ଆରେ ଶୁଣ, ତୁମେ ସହରରୁ ଫେରିବା ସମୟରେ ରାସ୍ତାରେ କୌଣସି ଗଛ ତଳେ କେବେ ଶୋଇବ ନାହିଁ, ଆଉ ଅନ୍ଧାର ହେବା ଆଗରୁହିଁ ଘରକୁ ଫେରି ଆସିବ ।"

ବୀରେଶ "ଆଚ୍ଛା" କହି ଚାଲିଗଲା ।

ସେଠାରେ ଫଳ ସବୁ ବିକି କିଛି ମିଠାଇ ଖାଇ ବାକି ପଇସା ଅଣ୍ଟାରେ ଖୋସିଲା । ତା'ର ମନେ ପଡ଼ିଲା ମୈଥିଳୀ ଭଙ୍ଗା ଦର୍ପଣରେ ମୁହଁ ଦେଖୁଥାଏ । ତା'ର ଇଚ୍ଛା ହେଲା ମୈଥିଳୀ ପାଇଁ ଦର୍ପଣଟିଏ କିଣି ନେବ । ସେ ଦର୍ପଣଟିଏ କିଣି ତାକୁ ଯତ୍ନର ସହିତ ହାତ ମୁଣିରେ ରଖିଲା ଓ ବାଟ ଚାଲିଲା ।

ସୁରେନ୍ଦ୍ରନାଥ



ଗ୍ରାମକୁ ଯିବା ପାଇଁ ଦୁଇଟି ରାସ୍ତା ଥାଏ । ଗୋଟିଏ ଲମ୍ବା; ବୁଲି ବୁଲି ଯିବାକୁ ପଡ଼େ, ଅନ୍ୟଟି ହେଲା ଛୋଟ ଓ ସିଧା କିନ୍ତୁ ଜଙ୍ଗଲ ଭିତରେ ଯିବାକୁ ପଡ଼େ । ଏବେ ବୀରେଶ ଶୀଘ୍ର ଘରେ ପହଞ୍ଚିବା ପାଇଁ ସିଧା ରାସ୍ତା ଧରି ଗଲା ।

ସାଧାରଣ ରାସ୍ତା ସରିବା ପରେ ସେ ଜଙ୍ଗଲ ଭିତରେ ଯାଉଥାଏ । ମାତ୍ର ଖରାବେଳ ହୋଇଥାଏ । ତାକୁ ବହୁତ ହାଲିଆ ଲାଗିଲା । ଗୋଟିଏ ତେନ୍ତୁଳି ଗଛର ଛାଇରେ ସେ ବସି ପଡ଼ିଲା । ସେଠାରେ ବସୁ ବସୁ ତାକୁ ନିଦ ହୋଇ ଯାଇଛି । ସେଇ ଗଛରେ ଥାଏ ଗୋଟାଏ ବ୍ରହ୍ମରାକ୍ଷସୀ । ସେ ମଧ୍ୟ ଗଛ ଡାଳରେ ଶୋଇଥାଏ । ଖରାରେ ବୀରେଶର ଦର୍ପଣରୁ ପ୍ରତିଫଳନ ତା'ର ମୁହଁରେ ପଡ଼ିବାରୁ ତା'ର ନିଦ ଭାଙ୍ଗିଗଲା ।

ନିଦ ଭାଙ୍ଗିବା ମାତ୍ରେ ତା' ଆଖି ଯାଇ ପଡ଼ିଲା ବୀରେଶ ଉପରେ । ସେ ରାଗିଯାଇ କହିଲା, "ଆରେ ମୋ ଗଛ ତଳେ କିଏ ଶୋଇଛି? କାହାର ଏତେ ସାହସ?" ଏତିକି କହି ସେ ତଳକୁ ଡେଇଁ ପଡ଼ିଲା ।

ବୀରେଶ ଚମକି ପଡ଼ି ଉଠି ବସିଲା । ଆଉ ଦେଖିଲା ତା' ସାମନାରେ ଲମ୍ବା ବାଳ ଓ ବଡ଼ ମୁହଁ ଥିବା ଏକ ବ୍ରହ୍ମରାକ୍ଷସୀ । ତାକୁ ଦେଖି ବୀରେଶ ଡରିଯାଇ ଦର୍ପଣଟାରେ ମୁହଁକୁ ଢାଙ୍କି ଦେଲା । ଦର୍ପଣର କାଚ ପଟଟି ଥିଲା ରାକ୍ଷସୀ ପଟକୁ । ରାକ୍ଷସୀ ଦେଖିଲା ତା' ନିଜର ପ୍ରତିବିମ୍ବ । ତେଣୁ ସ୍ୱତଃ ସେ ଭାବିଲା ଯେ ଗଛ ତଳେ ଆଉ ଏକ ବ୍ରହ୍ମରାକ୍ଷସୀ ବୋଧହୁଏ ରହିଛି । ସେ ତାଳିମାରି କହିଲା, "ଆରେ ଇଏ କି ଅଦ୍ଭୁତ କଥା! ଦେହ ତ ମଣିଷ ପରି ପୁଣି ମୁହଁଟା ବ୍ରହ୍ମରାକ୍ଷସୀ ପରି?" ତା'ପରେ ସେ ବୀରେଶକୁ ଡାକି କହିଲା, "ତମେ ତ ମୋ ପରି ଜଣେ ବ୍ରହ୍ମରାକ୍ଷସୀ। କିନ୍ତୁ ଶରୀରକୁ ମଣିଷ ପରି କରିବା ଭଳି ବିଦ୍ୟା କେଉଁଠାରୁ ଶିଖିଲ?"

ଏକଥା ଶୁଣି ବୀରେଶ ମୁହଁରୁ ଦର୍ପଣଟି ଘୁଞ୍ଚାଇ ଦେଲା । ବ୍ରହ୍ମରାକ୍ଷସୀ ଆହୁରି ଆଶ୍ଚର୍ଯ୍ୟ ହୋଇ କହିଲା, "ଆରେ! ତୁମ ଦେହେବି ମଧ୍ୟ

ଏବେ ମଣିଷ ପରି ହୋଇଗଲା । ତମେ ଚାହିଁଲେ ଏବେ ମଣିଷଙ୍କ ମଧ୍ୟରେ ଜୀବନ କଟାଇ ପାରନ୍ତି । ମୋର ମଧ୍ୟ ବହୁତ 'ଇଚ୍ଛା ମଣିଷଙ୍କ ସହିତ ରହିବାକୁ । ମୋ ଚେହେରା ତମେ ସେପରି ବଦଳାଇ ଦେଇ ପାରିବ? ଯଦି ପାରନ୍ତି ତେବେ ମୁଁ ତୁମ ପାଖରେ ଚିର କୃତଜ୍ଞ ହୋଇ ରହନ୍ତି ।"

ବୀରେଶ ଏସବୁ ଶୁଣି ଆଶ୍ଚର୍ଯ୍ୟ ହେଲା । କିନ୍ତୁ ଭାବିଲା, କିଛି ଉପାୟ ନ କଲେ ତା'ର ମୃତ୍ୟୁ ଅନିବାର୍ଯ୍ୟ । ଭାବିଲା, "ମୋତେ ତ ଲୋକ ଅଳସୁଆ କହୁଛନ୍ତି । ଯଦି ମୁଁ ଏହାର ସ୍ୱଭାବ ବଦଳାଇ ଦେଇ ଏହାକୁ ମଣିଷ ସମାଜକୁ ନେଇଯା'ନ୍ତି, ଲୋକେ ମୋର ଅନେକ ପ୍ରଶଂସା କରିବେ । ଜଣାଯାଉଛି ଏହି ବ୍ରହ୍ମରାକ୍ଷସୀ କାହାରି କିଛି କ୍ଷତି କରିବ ନାହିଁ । ତେଣୁ ମୁଁ କାମଟା କୌଣସି ମତେ କରିପାରିବି ।"

ଏସବୁ ଭାବି ସେ ବହୁତ ପ୍ରସନ୍ନତା ପୂର୍ବକ ବ୍ରହ୍ମରାକ୍ଷସୀକୁ କହିଲା, "ମୁଁ ତୁମକୁ ଅବଶ୍ୟ ମନୁଷ୍ୟ ରୂପ ଦେବି । କିନ୍ତୁ ତା' ପୂର୍ବରୁ ମଣିଷର ଚାଲିଚଳନ, ବ୍ୟବହାର ଏସବୁ ଶିଖିବାକୁ ହେବ । ତୁମେ ତୁମର କ୍ରୁର ଓ କଠୋର ସ୍ୱଭାବ ଛାଡ଼ି କୋମଳ ଓ ମଧୁର ସ୍ୱଭାବ ପାଇବାକୁ ଚେଷ୍ଟା କର । ତେବେ ଶେଷରେ ତୁମର ରୂପ ମଧ୍ୟ ମନୁଷ୍ୟ ପରି ହୋଇଯିବ ।"



ଏକଥା ଶୁଣି ବ୍ରହ୍ମରାକ୍ଷସୀ ବହୁତ ଖୁସି ହୋଇ କହିଲା, "ମୁଁ ତୁମକୁ କଥା ଦେଉଛି ଯେ ତୁମେ ଯାହା କହିବ ମୁଁ କରିବି ।"

ବୀରେଶ ବ୍ରହ୍ମରାକ୍ଷସୀକୁ ମଣିଷର ବ୍ୟବହାର ଶିଖାଇବାକୁ ଯାଇ କହିଲା, "ମୁଁ ପ୍ରତିଦିନ ସନ୍ଧ୍ୟାବେଳେ ଏଠାକୁ ଆସୁଥିବି । କିନ୍ତୁ ମନେରଖ, ତମର ମନୁଷ୍ୟ ରୂପ ହେବାକୁ ପ୍ରାୟ ଛ ସାତମାସ ଲାଗିବ ।" ଏସବୁ ବୁଝାଇ ଦେଇ ସନ୍ଧ୍ୟା ହେବା ପୂର୍ବରୁ ବୀରେଶ ଘରକୁ ଗଲା । ମୈଥିଳୀ ତା'ର ବାଟଚାହିଁ ବସିଥିଲା । ବୀରେଶ ତା' ପାଇଁ ଦର୍ପଣ ଆଣିଛି ଦେଖି ଖୁବ୍ ଖୁସି ହେଲା । କିନ୍ତୁ ବୀରେଶ ବ୍ରହ୍ମରାକ୍ଷସୀ ବିଷୟରେ ମୈଥିଳୀକୁ କିଛି କହିଲା ନାହିଁ ।

କାରଣ ମୈଥିଳୀ ଉଠିବ ଓ ବୀରେଶକୁ ପରଦିନ ଜଙ୍ଗଲକୁ ଯିବାକୁ ଛାଡ଼ିବ ନାହିଁ ।

ପରଦିନ ସନ୍ଧ୍ୟାବେଳେ ଶୀଘ୍ର ଫେରିବ କହି ବୀରେଶ ଜଙ୍ଗଲକୁ ଗଲା । ସେଠାରେ ମଣିଷର ବେଶଭୂଷା ବିଷୟରେ ବୀରେଶ ବ୍ରହ୍ମରାକ୍ଷସୀକୁ ଶିକ୍ଷା ଦେଲା ଓ ଅନେକ ରାତିରେ ଫେରିଲା । ମୈଥିଳୀ ଆଶ୍ଚର୍ଯ୍ୟ ହେଲା ଓ କହିଲା, "ଏତେ ରାତି ପର୍ଯ୍ୟନ୍ତ କୁଆଡ଼େ ଥିଲ ? ମୁଁ ହଜାରଥର କହିଛି ନା ବେଶି ରାତି ପର୍ଯ୍ୟନ୍ତ ବାହାରେ ରହିବ ନାହିଁ ବୋଲି ?" ବୀରେଶ କିଛି ଉତ୍ତର ନ ଦେଇ, କ୍ଲାନ୍ତ ହୋଇଛି ବୋଲି କହି ଶୋଇଗଲା ।

ପରଦିନ ବୀରେଶ ବ୍ରହ୍ମରାକ୍ଷସୀର ପରିବର୍ତ୍ତନ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସେ ତା'ର ବଡ଼ ବଡ଼ ନଖ ସବୁ କାଟି ଦେଇଥାଏ । ନଦୀରେ ଗାଧୋଇ ଆସି ବାଳରେ ସବୁ ସୁନ୍ଦର ବେଣୀଫୁଲ ଖୋସିଥାଏ ।

ବୀରେଶ ତାକୁ ପ୍ରଶଂସା କରି କହିଲା, "ତୁମେ ତ ବେଶ୍ ସୁନ୍ଦର ଭାବରେ ସବୁ ଶିଖିଛ । ତମର ମଣିଷର ଚାଲିଚଲଣ ଶିଖିବାରେ ଆଗ୍ରହ ଓ ପ୍ରଚେଷ୍ଟା ଦେଖି ମୁଁ ଖୁବ୍ ଖୁସି ।" ତା' ପରେ ସେ ମନୁଷ୍ୟର ମଧୁର ଓ ସ୍ନେହପୂର୍ଣ୍ଣ ବାର୍ତ୍ତାଳାପ ବିଷୟରେ ତାକୁ ବୁଝାଇଲା ।

ପୁଣି ବୀରେଶକୁ ଡେରିରେ ଆସିବାର ଦେଖି ମୈଥିଳୀ ରାଗି କରି କହିଲା, "ଏକଥା ସତ ଯେ ତମର ଅଳସୁଆପଣିଆ ଧୀରେ ଧୀରେ କଟି ଯାଉଛି, କିନ୍ତୁ କୁହ ତ ଏତେ ରାତି ପର୍ଯ୍ୟନ୍ତ କୁଆଡ଼େ ରହୁଛ ଓ କ'ଣ କରୁଛ ?



ଅନ୍ତତଃ ସେତକ ତ କହିବ !" ମୈଥିଳୀର ସବୁ ରାଗ ବୀରେଶ କିଛି ନ କହି କେବଳ ସହିଗଲା । ଏମିତ ଦିନକୁ ଦିନ ବୀରେଶର ସହ୍ୟ କରିବାର ଶକ୍ତି ବଢ଼ିଲା; ଆଉ ଯେତେ ବଢ଼ିଲା ମୈଥିଳୀର ସନ୍ଦେହ ମଧ୍ୟ ସେତକ ବଢ଼ିଲା । ଦିନେ ମୈଥିଳୀ ମନସ୍ଥ କଲା ଯେପରି ହେଉ ଏ ରହସ୍ୟ ସେ ଜାଣିବ ।

ଦିନେ ରାତିରେ ତେନ୍ତୁଳି ଘୁଣ୍ଟିଏ ହାତରେ ଧରି ସେ ବୀରେଶର ପଛେ ପଛେ ଗଲା । ଯାଇ ଯାଇ ଘନ ଜଙ୍ଗଲରେ ପହଞ୍ଚିଲା । ସେଠାରେ ସବୁ ବନ୍ୟଜନ୍ତୁଙ୍କ ଶବ୍ଦ ଶୁଣି ସେ ଡରିଗଲା । ତଥାପି ସ୍ୱାମୀଙ୍କର ଏ ରହସ୍ୟ ବୁଝିବା ପାଇଁ ମନେ ମନେ ସେ ସାହସ ବାନ୍ଧି ଚାଲିଥାଏ । ଶେଷରେ ବୀରେଶକୁ ବ୍ରହ୍ମରାକ୍ଷସୀ ପାଖକୁ ଯିବାର ଦେଖି ସେ ଭୟରେ ଗୋଟିଏ ବୁଦା ମୂଳରେ ଛପି ବସିଲା ।

ବ୍ରହ୍ମରାକ୍ଷସୀ ତା'ପରେ ବୀରେଶକୁ କହିଲା, "ତମେ ମନୁଷ୍ୟର ଆଚାର ବ୍ୟବହାର ଭଲ ରୂପେ ମୋତେ ଶିଖାଇ ପାରିଛ । କିନ୍ତୁ ମଣିଷ ଯେପରି ମଧୁର ସ୍ୱରରେ ସୁନ୍ଦର ଗୀତ ଗାଇ ପାରୁଛି ମୋର ମଧ୍ୟ ଇଚ୍ଛା ସେପରି ଗୀତ ଗାଇବାକୁ । ଶିଖାଇ ପାରିବ ? ସଂଗୀତ ଶିଖିଲେ ମୋର ସମୟ ଭଲ ଭାବରେ କଟିବ ଓ ମୁଁ ସେଥିରୁ ଅପାର ଆନନ୍ଦ ପାଇବ ।"

ବ୍ରହ୍ମରାକ୍ଷସୀର ଏପରି କଥାରେ ବୀରେଶ ଖୁବ୍ ଖୁସି ହୋଇ ଗୀତ ଗାଇଲା । ବ୍ରହ୍ମରାକ୍ଷସୀ ଧୀରେ ଧୀରେ ସେ ଗୀତ ସବୁ ଶିଖିବାକୁ ଚେଷ୍ଟା କଲା ।





ଏସବୁ ଦେଖି ମୈଥିଳୀର ଭୟ ଭାଙ୍ଗିଗଲା । ସେ ତେନ୍ତୁଳିଗଛ ଧରି ବୁଦା ମୂଳରୁ ବାହାରି ଆସି ବୀରେଶକୁ କହିଲା, "ଆଚ୍ଛା, ଏତେଦିନ ଧରି ଏଇ ପାଳି ଲାଗିଛି ନା, ମୁଁ ଭାବୁଥିଲି ତୁମର ଆଳସ୍ୟ ଦୂର ହୋଇଛି ବୋଲି; ହଉ ତୁମ କଥା ପରେ । ଏବେ ତୁମର ଟେଙ୍ଗୀକୁ ଟିକିଏ ଦେଖିନିଏ ।" ଏତିକି କହି ସେ ବ୍ରହ୍ମରାକ୍ଷସୀକୁ ପିଟିବାକୁ ଲାଗିଲା ।

ବ୍ରହ୍ମରାକ୍ଷସୀ ଚିତ୍କାର କରି ଦୌଡ଼ିଲା ଓ କହିଲା "ରକ୍ଷାକର, ରକ୍ଷାକର, ଏ ବ୍ରହ୍ମରାକ୍ଷସୀ କୁଆଡୁ ଆସି ମୋତେ ମାରୁଛି ?" ମୈଥିଳୀର ସେ ଭୟଙ୍କର ରୂପ ଦେଖି ବୀରେଶ ଖୁବ୍ ଡରିଗଲା । ଏତେ ବେଳି ସେ ବ୍ରହ୍ମରାକ୍ଷସୀକୁ ପ୍ରଥମଥର ଦେଖି ମଧ୍ୟ ଡରି ନଥିଲା । ତେଣୁ ପତ୍ନୀ ଭୟରେ ସେ ମଧ୍ୟ ବ୍ରହ୍ମରାକ୍ଷସୀ ପଛରେ ଦୌଡ଼ି ପଳାଇଲା ।

ବୀରେଶ ମୈଥିଳୀ ବିଷୟରେ କହିଲା, "ମନୁଷ୍ୟ କେବେ କେବେ ବ୍ରହ୍ମରାକ୍ଷସ ପରି କ୍ରୁର ବ୍ୟବହାର କରିଥାଏ ଏବଂ ସେତେ-ବେଳେ ସେ ରାକ୍ଷସଠୁ ମଧ୍ୟ ଅଧିକ କ୍ରୁର ହୋଇଥାଏ ।"

ଏକଥା ଶୁଣି ବ୍ରହ୍ମରାକ୍ଷସୀ କହିଲା, "ମନୁଷ୍ୟର ଯଦି ଏପରି ରୂପ, ତେବେ ମୋର ମନୁଷ୍ୟ ହେବା ଦରକାର ନାହିଁ । ଏଇ ମହିଳାଙ୍କୁ ଦେଖି ମୋର ମନୁଷ୍ୟ ହେବାର ଅଭିଳାଷ ଆଉ ନାହିଁ । ବରଂ ମୁଁ ଏଇ ଜଙ୍ଗଲରେ ଶାନ୍ତିରେ ଏକା ଏକା ରହିବି ଯେଉଁଠି କେହି ମଣିଷ ରହୁନଥିବ ।" ଏକଥା କହି ସେ କୁଆଡ଼େ ଚାଲିଗଲା ।

ଏବେ ବୀରେଶ ଏକୁଟିଆ ବସି ବସି ଭାବିଲା, "ମୁଁ ଏବେ କରେ କ'ଣ ? ଘରକୁ ଫେରିଯିବି ନା ସାରା ରାତି ଏଇଠି ବସି ରହିବି ?" ଠିକ୍ ଏଇ ସମୟରେ କାଠବିଡ଼ା ମୁଣ୍ଡେଇ ଅଜା ଦିନବନ୍ଧୁ ଆସି ସେଠି ପହଞ୍ଚିଲେ । ସେ ବୀରେଶକୁ ଦେଖି କହିଲେ, "ଆରେ ଅଳସୁଆ ନାତି, ତୁ ଏଠି ଏତେ ରାତିରେ କ'ଣ କରୁଛୁ ?"

ବୀରେଶ ଅଧା ଭୟରେ ସବୁକଥା ଅଜାଙ୍କୁ ବୁଝାଇ କହିଲା ଓ ଶେଷରେ ପଚାରିଲା,

"ବୁଢ଼ ଅଜା, ଏଥିରେ ମୋର ଦୋଷ କ'ଣ ?"

ଟିକିଏ ହସି ଅଜା କହିଲେ, "ପ୍ରଥମ ଦୋଷ ହେଲା ଆଜି ପର୍ଯ୍ୟନ୍ତ ତୁ ତୋର ଦୈନନ୍ଦିନ ଚଳଣି ପାଇଁ କିଛି ରୋଜଗାର ନ କରି ଅଳସୁଆ ହୋଇ ଘରେ ବସୁଥିଲୁ । ଦ୍ୱିତୀୟ ଦୋଷ ହେଉଛି ଯେ ତୁ ଜଣେ ବ୍ରହ୍ମରାକ୍ଷସୀକୁ ମନୁଷ୍ୟ ବନାଇବାକୁ ଚାହୁଁଥିଲୁ, ଏବେ ତୋ ଭିତରେ ଥିବା ଆଳସ୍ୟ ରୂପକ ରାକ୍ଷସୀ ଦୂରକୁ ଚାଲିଯାଇଛି । ଏବେ ତୁ ରୋଜଗାର କରିବା ପାଇଁ କିଛି ଉପାୟ କର ।"

ବୀରେଶ ଆଖି ଆଗରେ ତା'ର ବାଡ଼ି, କ୍ଷେତ, ଫଳ ବଗିଚା ସବୁ ଭାସି ଉଠିଲା । ସେ ମନସ୍ଥ କଲା ଏବେ ଆଳସ୍ୟ ଦୂର କରି ସେଇ ସବୁଥିରେ ଲାଗିବ । ସେ ଅଜାଙ୍କୁ କହିଲା, "ଅଜା, ତୁମ କଥା ଅନୁସାରେ ଏବେ ମୁଁ କ୍ଷେତବାଡ଼ି ବଗିଚାରେ ମନ ଦେବି । ଏବେ ତମେ ଦେଖିବ ମୁଁ ଇତିମଧ୍ୟରେ କେତେ ଯୋଗ୍ୟ ହୋଇ ପାରିଛି । ଏସବୁ ସମ୍ଭବ ହୋଇଛି କିନ୍ତୁ ବ୍ରହ୍ମରାକ୍ଷସୀ ଯୋଗୁ । ସେ ପ୍ରକୃତରେ ମୋର ଅନେକ ଉପକାର କରିଛି ।"

ବୀରେଶର ଅନୁରୋଧରେ ଅଜା ଦୀନବନ୍ଧୁ ପ୍ରଥମେ ତା' ଘରକୁ ଯାଇ ମୈଥିଳୀକୁ ଡାକିଲେ । ମୈଥିଳୀ ସେତେବେଳେ କବାଟ ବନ୍ଦ କରି କାନ୍ଦୁଥାଏ । ଦୀନବନ୍ଧୁ ବାରମ୍ବାର ଡାକିବାରୁ ସେ କବାଟ ଖୋଲିଲା ।

"ଝିଅ, ତୁ କାନ୍ଦୁଛୁ କାହିଁକି?" ଅଜା ପଚାରିଲେ । ମୈଥିଳୀ ଅଜାଙ୍କ ସାନ୍ତ୍ୱନାଭରା କଣ୍ଠସ୍ୱର ଶୁଣି ଆହୁରି ଜୋରରେ କାନ୍ଦି ପକାଇଲା ଓ ସବୁ ଗପିଗଲା ।

"ଝିଅ! ମୁଁ ବୀରେଶକୁ ଯେମିତି ଜାଣେ, ସେ ବ୍ରହ୍ମରାକ୍ଷସୀକୁ ବି ସେମିତି ଜାଣେ । ତୋର ଚିନ୍ତିତ ହେବାର କାରଣ ନାହିଁ । ବ୍ରହ୍ମରାକ୍ଷସୀ ତ ପଳାଇ ଗଲାଣି । କିନ୍ତୁ ତା' ସମ୍ପର୍କରେ ଆସି ବୀରେଶର ଯେଉଁ ଲାଭ ହୋଇଛି, ସେ ଲାଭ ଚିରଦିନ ତୋ ପରିବାରର କାମରେ ଆସିବ ।"



# ବିଶେଷତ୍ୱ !

ଅମରାବତୀର ତିନିଜଣ ବ୍ୟକ୍ତି ଅନ୍ୟ ଏକ ନଗରୀରେ ଚାକିରି କରୁଥା'ନ୍ତି । ବହୁତ ଦିନ ପରେ ବୟସ ହୋଇଗଲାରୁ ନିଜ ଦେଶକୁ ଫେରି ଆସିଲେ ।

ଦିନେ ତିନିଜଣ ବୁଢ଼ା ବସି ନିଜ ନିଜର ଘରସଂସାର କଥା ଆଲୋଚନା କରୁଥା'ନ୍ତି । ଗୋଟିଏ ବାଳକ ଆସି ତନ୍ମଧ୍ୟରୁ ଜଣେ ବୁଢ଼ାକୁ ପଚାରିଲା, "ଜେଜେବାପା, ଆଜି ରାତିରେ କ'ଣ ତରକାରି ହେବ ଜେଜେମା ଓ ମା' ପଚାରୁଛନ୍ତି ।"

ସେତେବେଳେ ବୁଢ଼ା ନିଜ ନିଶରେ ହାତ ବୁଲାଇ ଅନ୍ୟ ଦୁଇ ବୁଢ଼ାଙ୍କୁ କହିଲା, "ଦେଖୁନାହଁ ? ମୋତେ କିଛି ନ ପଚାରିଲେ ଆମ ସଂସାର ଚଳିବ ନାହିଁ ।"

ସେ କଥା ଶୁଣି ଅନ୍ୟ ଜଣେ ବୁଢ଼ା ତା' ସଂସାର ଉପରେ କିପରି ତା'ର ଅଧିକାର ସେ କଥା ବର୍ଣ୍ଣନା କଲା ।

ତୃତୀୟ ବୁଢ଼ା ଏକଥା ଶୁଣି ଉଠି ପଡ଼ି ଚାଲିବାକୁ ଲାଗିଲା । ସେ ଚାଲିବାର ଦେଖି ଅନ୍ୟ ଦୁଇବୁଢ଼ା ପଚାରିଲେ, "କ'ଣ ତମ ଘର ସଂସାର ଉପରେ ତମର ଅଧିକାର ନାହିଁ କିଓ ?"

"ନା, ତା ନୁହେଁ, କିନ୍ତୁ ଏପର୍ଯ୍ୟନ୍ତ ମୁଁ ଜାଣି ନଥିଲି ଯେ ନିଜ ଘର ବା ପିଲାଙ୍କ ଉପରେ ଅଧିକାର ରହିବାରେ କିଛି ବିଶେଷତ୍ୱ ଅଛି ।" ଏକଥା କହି ସେ ଚାଲିଗଲା ।





# ବିଷ୍ଣୁ ପୁରାଣ

ପର୍ଶୁରାମଙ୍କ ଧନୁଟିକୁ ଶ୍ରୀରାମ ଗ୍ରହଣ କରି ଅନାୟାସରେ ସେଥିରେ ଗୁଣ ଚଢ଼ାଇଲେ । ତାହା ଦେଖି ପର୍ଶୁରାମ କହିଲେ, "ହେ ରଘୁକୁଳତିଳକ ରାମଚନ୍ଦ୍ର, ଆଜିଠାରୁ ମୁଁ କ୍ଷତ୍ରିୟବିଦ୍ୱେଷ ପରିତ୍ୟାଗ ପୂର୍ବକ ଶାନ୍ତିରେ ତପସ୍ୟା କରିବି । ମୁଁ ଯେଉଁ କୋଦଣ୍ଡଟି ଆପଣଙ୍କୁ ଦେଲି ସେଇଟି ଆପଣଙ୍କର ଧନୁ । ସେଥିପାଇଁ ଆପଣଙ୍କ ନାମ ଆଜିଠାରୁ କୋଦଣ୍ଡରାମ ।" ଏତିକି କହି ସେ ତତ୍‌କ୍ଷଣାତ୍ ସେ ସ୍ଥାନ ଛାଡ଼ି ଚାଲିଗଲେ ।

ଅଯୋଧ୍ୟାନଗରୀ ନବଦମ୍ପତିଙ୍କ ଆଗମନରେ ଶୋଭାମୟ ହୋଇ ଉଠିଲା । ରାମ ଓ ସୀତା ପରସ୍ପର ପ୍ରତି ଗଭୀର ଅନୁରାଗ ସହିତ ଆନନ୍ଦରେ ଜୀବନ ଯାପନ କଲେ । ଦିନେ ରାମଚନ୍ଦ୍ର ସୀତାଙ୍କୁ କୌତୁକରେ କହିଲେ, "ଜାନକୀ, ଏଇ ରାଜମହଲ ଅପେକ୍ଷା ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ବନ ମଧ୍ୟରେ ଆମେ ବିହାର କଲେ ଜୀବନ କେତେ ସୁଖମୟ ହୁଅନ୍ତା !" ସୀତା କେବଳ ସ୍ମିତ ହାସ୍ୟ କଲେ ।

ଦଶରଥ ଯଥାଶୀଘ୍ର ଶ୍ରୀରାମଚନ୍ଦ୍ରଙ୍କର ଅଭିଷେକ କରିବାକୁ ମନସ୍ଥ କଲେ ଓ କୁଳଗୁରୁ ବଶିଷ୍ଠଙ୍କୁ କହିଲେ ।

ତେଣେ ସତ୍ୟଲୋକରେ ବ୍ରହ୍ମା ସଚ୍ଚିଦାନନ୍ଦରେ ମଗ୍ନ ଥା'ନ୍ତି । ଦେବୀ ସରସ୍ୱତୀ ବୀଣାରେ ରାଗମାଳାର ଆଳାପ କରୁଥା'ନ୍ତି । ନାରଦ ଓ ଦେବତାମାନେ ସେଠାରେ ଆସି ପହଞ୍ଚିଲେ । ନାରଦ ବ୍ରହ୍ମାଙ୍କୁ କହିଲେ, "ଭଗବାନ୍, ରାମଚନ୍ଦ୍ର ସିଂହାସନରେ ବସିଲେ

୧୨. ଶ୍ରୀରାମଙ୍କ ବନବାସ



ରାକ୍ଷସ ସଂହାର କିପରି ହେବ? ଦେବତାମାନେ ଏସବୁ ଭାବି ବଡ଼ ବ୍ୟସ୍ତ ହୋଇ ପଡ଼ିଛନ୍ତି। ବ୍ରହ୍ମା ସରସ୍ୱତୀଙ୍କୁ ଚାହିଁଲେ; ସରସ୍ୱତୀ ମନ୍ଦହାସ କରି କହିଲେ, "ହେ ନାରଦ, ତମେ ତ କଳହପ୍ରିୟ। ଯାହା ହେବାର ଥିବ ହେବ। ଦେଖ ତ ଯଦି ମନ୍ଥରା ଓ କୈକେୟୀ ଏ ବିଷୟରେ କିଛି କରିପାରନ୍ତି।" ତା'ପରେ ଦେବତା ଓ ନାରଦ ସ୍ୱର୍ଗରୁ ପୃଥିବୀ ଉପରକୁ ଦୃଷ୍ଟିପାତ କଲେ। ସେମାନେ ଦେଖିଲେ କୁଜୀ ମନ୍ଥରା ମନକୁ ମନ କ'ଣ ଗୁଣୁ ଗୁଣୁ କରି ଚାଲିଛି।

ମନ୍ଥରା କୈକେୟୀଙ୍କ ବିବାହ ବେଳେ ତାଙ୍କ ପିତାଙ୍କ ଗୃହରୁ ଦାସୀମାନଙ୍କ ମଧ୍ୟରେ ଜଣେ ହୋଇ ଆସିଥିଲା। ସେ ସର୍ବାପେକ୍ଷା ବୟସ୍କା। ପିଲାଦିନରୁ କୈକେୟୀଙ୍କୁ ପାଳିଛି।

ମନ୍ଥରାର ଗମ୍ଭୀର ମୁହଁ ଦେଖି କୈକେୟୀ ପଚାରିଲେ, "କଥା କ'ଣ? ତୁ କାହିଁକି ଉଦାସ ଦେଖାଯାଉଛୁ ଆଜି?"

"ମହାରାଣୀ, କ'ଣ ଆଉ କହିବି? କାଲି ଶ୍ରୀରାମଚନ୍ଦ୍ରଙ୍କର ରାଜ୍ୟାଭିଷେକ!"

ସଙ୍ଗେ ସଙ୍ଗେ କୈକେୟୀ ନିଜ କଣ୍ଠରୁ ମୋତିର ହାର ଖୋଲି ମନ୍ଥରାକୁ ଦେଇ କହିଲେ, "ଅରେ, ତୁ କି ଖୁସିର ଖବର ଆଜି ମୋତେ ଦେଲୁ।"

ମନ୍ଥରା ମୁହଁମୋଡ଼ି କହିଲା, "ଆହା, ଆପଣ କି ଭୋଳା ଲୋକ।"

"କାହିଁକି? କ'ଣ ହେଲା କି?" କୈକେୟୀ ପଚାରିଲେ।

"ଓହୋହୋ ବୁଝିପାରୁ ନାହାନ୍ତି କି? ରାମଚନ୍ଦ୍ର ରାଜା ହେଲେ ଆପଣ ମୋ ସହିତ କୌଶଲ୍ୟାର ଦାସୀ ହୋଇ ରହିବେ। ଏବେ ମଧ୍ୟ ସମୟ ଅଛି। ଆପଣ ପୂର୍ବରୁ ଯାଚିଥିବା ଦୁଇଟି ବର ଏବେ ରାଜାଙ୍କୁ ମାଗନ୍ତୁ।"

ମନ୍ଥରା କଥା ଅନୁସାରେ କୈକେୟୀ ଦଶରଥଙ୍କୁ ଦୁଇଟି ବର ମାଗିଲେ: "ପ୍ରଥମରେ ରାମର ଚଉଦବର୍ଷ ବନବାସ। ଦ୍ୱିତୀୟ ବରରେ ଭରତର ରାଜ୍ୟାଭିଷେକ।"

କୈକେୟୀଙ୍କ କଥା ଶେଷ ନ ହେଉଣୁ ଦଶରଥ "ହା ରାମ" କହି ମୂର୍ଚ୍ଛା ଗଲେ।

ସବୁ ଶୁଣି ରାମଚନ୍ଦ୍ର କହିଲେ, "ପିତାଙ୍କର ସତ୍ୟ ପାଳନ କରିବା ମୋର କର୍ତ୍ତବ୍ୟ । ସତ୍ୟ ପାଳନ କରି ନ ପାରିବାର କଳଙ୍କ ଯେପରି ରଘୁବଂଶରେ ନ ଲାଗେ-।" ସେ ବନବାସ ପାଇଁ ପ୍ରସ୍ତୁତ ହେଲେ ।

ଲକ୍ଷ୍ମଣ କ୍ରୋଧରେ ରୁଦ୍ରମୂର୍ତ୍ତି ଧାରଣ କରି ହାତରେ ତଲବାର ଧରି ସେଠାରେ ପହଞ୍ଚିଲେ । ଉଭୟ କୈକେୟୀ ଓ ମନ୍ଥରାକୁ ଶାସ୍ତି ଦେବାକୁ ସେ ଚାହୁଁଥିଲେ । କିନ୍ତୁ ଶ୍ରୀରାମଚନ୍ଦ୍ର ବହୁତ ବୁଝାଇ ସୁଝାଇ ଲକ୍ଷ୍ମଣଙ୍କୁ ଶାନ୍ତ କଲେ । ଲକ୍ଷ୍ମଣଙ୍କ କ୍ରୋଧ ପରିଣତ ହେଲା ଦୁଃଖରେ । ଲକ୍ଷ୍ମଣଙ୍କର ଜୀବନ ଥିଲା ରାମଙ୍କ ପାଦତଳେ ଉତ୍ସର୍ଗୀକୃତ । ସେ ରାଜ୍ୟବିଭବ ଛାଡି ରାମଙ୍କର ଅନୁଗମନ କଲେ । ପତିବ୍ରତା ସୀତା ତ ସହଜେ ଗଲେ ।

ଅଯୋଧ୍ୟା ଛାଡିବାର ଦୃଶ୍ୟ ଅତ୍ୟନ୍ତ ଶୋକଦାୟକ । ଅଯୋଧ୍ୟାର ରାସ୍ତା ଜନାକୀର୍ଣ୍ଣ । ସମସ୍ତେ କାନ୍ଦୁଥା'ନ୍ତି । ରାମଲକ୍ଷ୍ମଣଙ୍କ ମା' ମାନେ ତ କାନ୍ଦି କାନ୍ଦି ଅସାଷ୍ଟମ ହୋଇ ପଡୁଥା'ନ୍ତି । ଦଶରଥଙ୍କର ମୂର୍ଚ୍ଛା ଅବସ୍ଥା । ବହୁ କଷ୍ଟରେ ଅଯୋଧ୍ୟାବାସୀଙ୍କୁ ବୁଝାଇ ସୁଝାଇ ସେମାନେ ବନପଥରେ ଅଗ୍ରସର ହେଲେ । ଗଙ୍ଗା ପାର ହୋଇ ସେମାନେ ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ପହଞ୍ଚିଲେ ।

ଏଣେ ଦଶରଥଙ୍କର ମୂର୍ଚ୍ଛା ଭାଙ୍ଗିବା ପରେ ସେ ରାମଙ୍କର ବନଗମନ ସମ୍ବାଦ ପାଇ,



"ହାରାମ", "ହାରାମ" କହି କହି ଶେଷ ନିଶ୍ୱାସ ତ୍ୟାଗ କଲେ । ସେତେବେଳେ ଭରତ ଓ ଶତ୍ରୁଘ୍ନ ସେମାନଙ୍କ ମାମୁଁ ଘରେ ଥିଲେ । ସେମାନେ ଖବର ପାଇ ଆସି ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମାପନ କଲେ ।

ଭରତ ଦୁଃଖରେ ଏତେ ମ୍ରିୟମାଣ ହୋଇ ପଡିଲେ ଯେ ତାଙ୍କ ମା'ଙ୍କର ମୁହଁକୁ ବି ଚାହିଁଲେ ନାହିଁ । ଶତ୍ରୁଘ୍ନ ମନ୍ଥରାକୁ ପିଟିବାକୁ ବାହାରିଲେ । ସେ କିନ୍ତୁ ଲୁଚି ପଳାଇଲା । ଶେଷରେ ରାମଚନ୍ଦ୍ରଙ୍କୁ ବନବାସରୁ ଫେରାଇ ଆଣିବା ପାଇଁ ମନସ୍ଥ କରି ଭରତ ରାଜ-କର୍ମଚାରୀ, ପରିବାର ଓ ବଶିଷ୍ଠଙ୍କୁ ଧରି ବଣକୁ ଗଲେ ।



ସେଠାରେ ଭରତଙ୍କର ରାମଙ୍କ ସହିତ ଦେଖାହେବା ପରେ ରାମ କହିଲେ, "ପିତାଙ୍କ ବଚନର ସତ୍ୟତା ପାଳନ କରିବା ଆମ ଦୁଇଜଣଙ୍କର ଦାୟିତ୍ୱ । ମୁଁ ବଡ଼ଭାଇ । ତେଣୁ ମୋ କହିବା ଅନୁସାରେ ତମେ ଯାଇ ଅଭିଷେକ ହୋଇ ରାଜ୍ୟ ପାଳନ କର ।"

ଭରତ ଅଶ୍ରୁପୂର୍ଣ୍ଣ ନେତ୍ରରେ ଶ୍ରୀରାମଙ୍କୁ ଚାହିଁ କହିଲେ, "ଆପଣଙ୍କ ସିଂହାସନରେ ମୁଁ କଦାପି ଅଭିଷେକ ହୋଇପାରିବି ନାହିଁ । ଯଦି ଆପଣ ଫେରି ନ ଚାଲନ୍ତି ତେବେ ଆପଣଙ୍କର ପାଦୁକା ଦୁଇଟି ଦିଅନ୍ତୁ ମୁଁ ସିଂହାସନରେ ରଖି ମୁଁ ସେବକ ଭାବରେ ସେଠାରେ ରହି ରାଜ୍ୟ ଶାସନ କରିବି ।" ଏତିକି କହି ରାମଙ୍କର ପାଦୁକା ଦୁଇଟି ମଥା ଉପରେ ରଖି ଭରତ ସେଇଠୁ ଫେରି ଆସିଲେ । ତା'ପରେ ରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତାଙ୍କୁ ନେଇ ବନର ଗଭୀରତମ ପ୍ରଦେଶରେ ପ୍ରବେଶ କଲେ ।

ଖର ଓ ଦୂଷଣ ନାମକ ଦୁଇଟି ରାକ୍ଷସ ଦଣ୍ଡକାରଣ୍ୟରେ ରାବଣର ପ୍ରତିନିଧି ଥିଲେ । ବିନ୍ଧ୍ୟାଚଳର ବନଭୂମି ଓ ଜନପଦ ସବୁ ସେମାନଙ୍କ ଅଧିକାରରେହିଁ ଥିଲା । ସେମାନେ ବୁଲି ବୁଲି ହଠାତ୍ ସୁନ୍ଦର ତିନୋଟି ମାନବଙ୍କୁ ଏକାଠି ଯାଉଥିବାର ଲକ୍ଷ୍ୟ କଲେ ।

ସେମାନେ କ୍ଷୁଧାର୍ତ୍ତ ଥିଲେ । ତେଣୁ ଏମାନଙ୍କୁ ଖାଇବା ପାଇଁ ଦୌଡ଼ିଗଲେ । କିନ୍ତୁ ରାମ ଲକ୍ଷ୍ମଣଙ୍କର କଠିନ ବାଣ ପ୍ରହାର ଯୋଗୁ ଖର, ଦୂଷଣ ଓ ଅନେକ ରାକ୍ଷସ ପ୍ରାଣ ହରାଇଲେ । ଅଳ୍ପ କେତେକ ଅସୁର ନିଜର ଜୀବନ ନେଇ ପଳାଇଲେ ।

ତା'ପରେ ରାମ ଓ ଲକ୍ଷ୍ମଣ ଏକ ସୁନ୍ଦର ସ୍ଥାନ ବାଛି କୁଟୀର ବନାଇଲେ । ଯୁଦ୍ଧରେ ବଞ୍ଚିଥିବା ରାକ୍ଷସମାନେ ସୂର୍ପଣଖାକୁ ସମସ୍ତ ସମାଚାର କହିଲେ । କାରଣ ସମଗ୍ର ଦାକ୍ଷିଣାତ୍ୟ ତା'ର ଦାୟିତ୍ୱରେ ଥିଲା ଓ ଖର, ଦୂଷଣ ତା'ର ଭାଇ ଥିଲେ । ସେ ରାମ, ଲକ୍ଷ୍ମଣଙ୍କୁ ମାରିବା ପାଇଁ ଖୋଜି ଲାଗିଲା ।

ପାଞ୍ଚଟି ବିଶାଳ ବଟବୃକ୍ଷର ସମାହାରରେ ପଞ୍ଚବଟୀ ବୋଲି ଗୋଟିଏ ସୁନ୍ଦର ଓ ରମଣୀୟ ସ୍ଥାନ ଥାଏ । ତା'ର ନିକଟରେ ବହିଯାଉଥାଏ



ଦକ୍ଷିଣର ଗଙ୍ଗା ସ୍ୱରୂପା ଗୋଦାବରୀ । ଗୋଟିଏ ସୁନ୍ଦର ପର୍ଣ୍ଣକୁଟୀର ନିର୍ମାଣ କରି ରାମ ସୀତା ଓ ଲକ୍ଷ୍ମଣଙ୍କ ସହ ସେହିଠାରେ ବାସ କଲେ । ଲକ୍ଷ୍ମଣ ଶ୍ରୀରାମ ଓ ସୀତାଙ୍କର ସେବା କରି ପର୍ଣ୍ଣକୁଟୀରକୁ ସର୍ବଦା ରକ୍ଷା କରୁଥା'ନ୍ତି ।

ଦିନେ ସେଠାରେ ଆସି ପହଞ୍ଚିଲା ରାବଣର ଭଉଣୀ ରାକ୍ଷସୀ ସୂର୍ପଣ୍ଣଖା । ସେ ଆସି ପ୍ରଥମେ ରାମଙ୍କୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କଲା । ତା'ପରେ ସୀତାଙ୍କୁ ଖାଇବାକୁ ବସିଲା । ଶେଷରେ ଲକ୍ଷଣ ରାଗି ତା'ର ନାକ କାନ କାଟିଦେଇ ଛାଡିଦେଲେ ।

ସୂପର୍ଣ୍ଣଖା ରାବଣ ପାଖରେ ପହଞ୍ଚିଲା ଓ ନିଜର ଅପମାନ ବିଷୟ କହିଲା । ସେ ସୀତାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କଲା । ରାବଣ ସବୁ ଶୁଣି ପ୍ରତିଶୋଧ ନେବାକୁ ଚାହିଁଲା । ସେଥିପାଇଁ ମାରୀଚକୁ ସୁବର୍ଣ୍ଣ ମୃଗ ରୂପରେ ସୀତାଙ୍କର ପର୍ଣ୍ଣକୁଟୀର ନିକଟକୁ ପଠାଇଲା ।

ସେଇ ସ୍ୱର୍ଣ୍ଣ ହରିଣକୁ ଦେଖି ସୀତା ମୁଗ୍ଧ ହୋଇ ରାମଙ୍କୁ ଆଣିଦେବାକୁ କହିଲେ । ରାମ ତାକୁ ଅନୁଧାବନ କରି ଗଭୀର ଜଙ୍ଗଲରେ ପ୍ରବେଶ ହେଲେ । ସେତେବେଳେ ହଠାତ୍ ରାମଙ୍କ ବାଣରେ ପୀଡ଼ିତ ହୋଇ ହରିଣ ପାଟିକଲା, "ହା ସୀତା, ହା ଲକ୍ଷ୍ମଣ!" ସୀତା ଏ ଶବ୍ଦ ଶୁଣି ବ୍ୟସ୍ତ ହୋଇ ଲକ୍ଷ୍ମଣଙ୍କୁ ପଠାଇଲେ । ଲକ୍ଷ୍ମଣ ଯେତେ ବୁଝାଇଲେ ଯେ ରାମଚନ୍ଦ୍ରଙ୍କର କୌଣସି ବିପଦ ହେବନାହିଁ, ସୀତା କିନ୍ତୁ ସେସବୁ ଶୁଣିଲେ ନାହିଁ । ବରଂ ଲକ୍ଷ୍ମଣଙ୍କୁ କଟୁକଥା କହିଲେ । ସେଥିରେ ଲକ୍ଷ୍ମଣ ବାଧ୍ୟ ହୋଇ ସୀତାଙ୍କୁ ଏକାଟିଆ ଛାଡ଼ି ବନକୁ ଗଲେ । ଯିବାବେଳେ କିନ୍ତୁ ତିନୋଟି ଗାର କାଟିଦେଇ ଗଲେ ଓ ଗାରକୁ ଡେଇଁ କୁଆଡ଼େ ନ ଯିବାକୁ କହିଲେ ।

ଲକ୍ଷ୍ମଣ ଯିବା ପରେ ରାବଣ ଏକ ବୃଦ୍ଧ ତପସ୍ୱୀ ବେଶରେ ଭିକ୍ଷା ମାଗିବାକୁ ଆସିଲା । ତାକୁ ଭିକ୍ଷା ଦେବାପାଇଁ ସୀତା ଗାର ଟପି ଚାଲିଗଲେ । ରାବଣ ନିଜ ରୂପ ଧରି ସୀତାଙ୍କୁ ପୁଷ୍ପକ ବିମାନରେ ଉଠାଇ ନେଇ ଚାଲିଗଲା ।

ରାମଲକ୍ଷ୍ମଣ ମୃଗୟାରୁ ଫେରି ସୀତାଙ୍କୁ ଖୋଜିଲେ । ଖୋଜି ଖୋଜି ଯାଉଁ ଯାଉଁ



ବାଟରେ ରକ୍ତାକ୍ତ ଅବସ୍ଥାରେ ପଡ଼ିଥିବା ଜଟାୟୁ ପକ୍ଷୀକୁ ଦେଖିଲେ । ଜଟାୟୁ କହିଲା, "ହେ ରାମଚନ୍ଦ୍ର, ଦୁଷ୍ଟ ରାବଣ ସୀତାଙ୍କୁ ଏଇ ରାସ୍ତାରେ ଦକ୍ଷିଣ ଦିଗକୁ ନେଇଗଲା । ମୁଁ ସୀତାଙ୍କୁ ମୁକ୍ତ କରିବାକୁ ବହୁତ ଚେଷ୍ଟା କଲି ଓ ରାବଣ ସହ ଯୁଦ୍ଧ କଲି । ରାବଣ ମୋର ପକ୍ଷଗୁଡ଼ିକ ଛେଦନ କରି ନିଜ ରାସ୍ତାରେ ଗଲା ।" ଏତିକି କହି ଜଟାୟୁ ପ୍ରାଣ ତ୍ୟାଗ କଲା ।

ଦଶରଥଙ୍କର ଅନ୍ୟ ମିତ୍ର ଜଟାୟୁର ଏପରି ଅବସ୍ଥା ଦେଖି ରାମ ବହୁତ ଦୁଃଖିତ ହେଲେ । ପରେ ରାମ ଓ ଲକ୍ଷ୍ମଣ ଦୁହେଁ ଜଟାୟୁର ଅନ୍ତ୍ୟେଷ୍ଟି କ୍ରିୟା ସମାପନ କଲେ ।

ତା'ପରେ କବନ୍ଧ ନାମକ ଦୈତ୍ୟ ରାମ ଓ ଲକ୍ଷ୍ମଣଙ୍କୁ ତା'ର ବିରାଟ ହାତରେ ଉଣ୍ଡାଳ ନେଇ ଖାଇବାକୁ ବସିଲା । ତା'ର ଦେହଟା ଏକ ବିରାଟ ପେଟ । ପେଟରେହିଁ ମୁହଁ । ମୁଣ୍ଡ ନଥିଲା । ଆଉ ଲମ୍ବା ଲମ୍ବା ଦୁଇଟା ହାତ ଓ ଦୁଇଟା ଗୋଡ଼ । ରାମ ଲକ୍ଷ୍ମଣ ତତ୍‌କ୍ଷଣାତ୍ ତା'ର ହାତ ଗୋଡ଼ କାଟି ପକାଇଲେ । ପ୍ରକୃତରେ ସେ ଥିଲା ଏକ ଅଭିଶପ୍ତ ଗନ୍ଧର୍ବ । ସେ ପ୍ରାଣତ୍ୟାଗ କରି ଗନ୍ଧର୍ବ ରୂପ ଧରି ସ୍ୱର୍ଗକୁ ଚାଲିଗଲା ବେଳେ କହିଲା, "ପ୍ରଭୁ, ଏହାପରେ ଆପଣ ବାନରମାନଙ୍କ ସହିତ ବନ୍ଧୁତା କରିବେ । ସେମାନଙ୍କ ସାହାଯ୍ୟରେ ଆପଣ ସୀତାଙ୍କୁ ଉଦ୍ଧାର କରି ପାରିବେ ।"

ଋଷ୍ୟମୂକ ପର୍ବତ ଉପରେ ବସବାସ କରି ରହୁଥା'ନ୍ତି ବାନର ରାଜା ସୁଗ୍ରୀବ । ସେ ନିଜ ଭାଇ ବାଲୀ ଦ୍ୱାରା ରାଜ୍ୟରୁ ବିତାଡିତ ହୋଇ ନିଜର ପାତ୍ରମନ୍ତ୍ରୀ ଧରି ସେଠାରେ ରହୁଥା'ନ୍ତି । ବହୁତ ଦୂରରୁ ସେମାନଙ୍କୁ ଦେଖିପାରି ବାନର ବୀର, ତାଙ୍କର ଅନ୍ୟତମ ମନ୍ତ୍ରୀ ଓ ଭଣଜା ହନୁମାନଙ୍କୁ ପଠାଇଲେ ।

ରାମଙ୍କର ଅବତାର ଭାବରେ ପୃଥିବୀରେ କାମ କରିବା ବେଳେ ତାଙ୍କୁ ସାହାଯ୍ୟ କରିବା ପାଇଁ ତିନିକୋଟି ଦେବତା ବାନର ରୂପରେ ଜନ୍ମ ନେଇଥିଲେ । ହନୁମାନ ଥିଲେ ଶିବ ଅଂଶ ସମ୍ଭୂତ । ଅଞ୍ଜନାଦେବୀ ବାୟୁଦେବତାଙ୍କ ସାହାଯ୍ୟରେ ହନୁମାନଙ୍କୁ

ଜନ୍ମ ଦେଇଥିଲେ । ତେଣୁ ତାଙ୍କ ନାମ ବାୟୁପୁତ୍ର ବା ମାରୁତ ।

ଜନ୍ମହୋଇ ହନୁମାନ ଉଦୟ ହେଉଥିବା ସୂର୍ଯ୍ୟଙ୍କୁ ଗୋଟାଏ ନାଲିଫଳ ଭାବି ଖାଇବା ପାଇଁ ଡେଇଁଗଲେ । ଇନ୍ଦ୍ର ସେଥିରେ ରାଗି ତାଙ୍କୁ ବଜ୍ରରେ ପ୍ରହାର କଲେ ଓ ସେ ମୂର୍ଚ୍ଛିତ ହୋଇ ପଡିଲେ । ଏଥିରେ ବାୟୁଦେବ ବହୁତ ଦୁଃଖିତ ହେଲେ ଓ ସାରା ବ୍ରହ୍ମାଣ୍ଡରେ ଆଉ ବାୟୁ ବହିଲା ନାହିଁ । ପ୍ରାଣୀମାନେ ଆକୁଳ ହୋଇ ମରିଯିବାକୁ ବସିଲେ । ସେତେବେଳେ ସବୁ ଦେବତାମାନେ ଲାଗି ତାଙ୍କୁ ସଚେତନ କରାଇଲେ ଓ ନିଜ ନିଜର ବିଭୂତି ପ୍ରଦାନ କରି ତାଙ୍କୁ ଅତି ବଳବାନ୍ କରାଇଲେ ।

ବ୍ରହ୍ମା ତାଙ୍କୁ ଗୋଟିଏ କବଚକୁଣ୍ଡଳ ଦେଇ କହିଲେ, "ଏହାକୁ ଯେଉଁ ବ୍ୟକ୍ତି ଚିହ୍ନିପାରିବ ତାଙ୍କୁ ତମେ ସାକ୍ଷାତ୍ ବିଷ୍ଣୁ ବୋଲି ଜାଣିବ ଓ ତାଙ୍କର ସେବା କରିବ । ସେତେବେଳେହିଁ ତମେ ଅନନ୍ତ ଶକ୍ତିରେ ଶକ୍ତିମାନ୍ ହେବ ।"

ସୁଗ୍ରୀବଙ୍କ ଆଦେଶରେ ହନୁମାନ ବ୍ରାହ୍ମଣ ରୂପ ଧରି ରାମଙ୍କ ପାଖରେ ପହଞ୍ଚିଲେ । ତାଙ୍କୁ ଦେଖିବା ମାତ୍ରେ ରାମ ମୁଗ୍ଧ ହୋଇ ଲକ୍ଷ୍ମଣଙ୍କୁ ହନୁମାନଙ୍କର କବଚକୁଣ୍ଡଳ ଜଥାହିଁ କହିଲେ । ହନୁମାନ ତାଙ୍କର ବହୁ ଇପ୍ସିତ ପ୍ରଭୁଙ୍କୁ ପାଇଲେ । ସେ ନିଜର ପରିଚୟ ଦେଇ ଦୁଇଭାଇଙ୍କୁ କାନ୍ଧରେ ବସାଇ ସୁଗ୍ରୀବଙ୍କ ପାଖରେ ଯାଇ ପହଞ୍ଚିଲେ ।

ସୁଗ୍ରୀବ ଓ ରାମ ଅଗ୍ନି ସାକ୍ଷୀ ରଖି ମିତ୍ର ହେଲେ । ସୁଗ୍ରୀବ ସହିତ ଝଗଡ଼ା କରି ବାଳୀ ତାଙ୍କୁ ରାଜ୍ୟରୁ ତଡି ଦେଇଥାଏ । ତେଣୁ ସେ ଋଷ୍ୟମୂକ ପର୍ବତରେ ଥା'ନ୍ତି । ସେଠାକୁ ବାଳୀ ଆସିପାରେ ନାହିଁ । ତା'ର ଅଭିଶାପ ଅଛି । ରାମ ସୁଗ୍ରୀବଙ୍କୁ କଥା ଦେଲେ ବାଳୀକୁ ମାରି ତାଙ୍କୁ ରାଜ୍ୟ ଦେବେ । ହେନେ ସୁଗ୍ରୀବ ଓ ବାଳୀ ଲଢ଼ିଲବେଳେ ଗୋଟିଏ ଗଛର ପଛପାଖରେ ଥାଇ ରାମ ବାଳୀକୁ ବଧ କଲେ ।






ଏକ ଯେ ଥିଲେ ରାଜା । ତାଙ୍କର ଥିଲା ଏକ କନ୍ୟା । ସେହି କନ୍ୟା ହିଁ ତାଙ୍କର ଏକମାତ୍ର ସନ୍ତାନ । ଅତଏବ ତାଙ୍କୁ ଯିଏ ବାହା ହେବ, ସେ ରାଜ୍ୟ ପାଇବ । ଏଇ ଯୋଗୁଁ କେତେ ସମ୍ଭ୍ରାନ୍ତ ଘରର ଯୁବକ ଓ ଆଖପାଖ ରାଜ୍ୟର ରାଜପୁତ୍ରମାନେ ସେ ରାଜକନ୍ୟାଙ୍କୁ ବାହା ହେବା ସକାଶେ ମନ କରୁଥିଲେ । ତାଙ୍କ ଭିତରୁ କେହି କେହି ନିଜ ବିଷୟରେ ମିଛ କଥା କହି ରାଜାଙ୍କୁ ଠକ ଦେଇ ରାଜକନ୍ୟାଙ୍କୁ ବାହା ହେବାକୁ ଚେଷ୍ଟା କଲେ । କିନ୍ତୁ ରାଜକନ୍ୟା ବୁଦ୍ଧିମତୀ ହୋଇଥିବାରୁ ସେମାନେ କେହି ସଫଳ ହେଲେ ନାହିଁ ।

ରାଜକନ୍ୟା ଯେତିକି ବୁଦ୍ଧିମତୀ ଥିଲେ, ରାଜା ସେତିକି ଖାମ୍‌ଖିଆଲ୍ ଥିଲେ । ସେ ଘୋଷଣା କଲେ, "ଲୋକେ ମୋତେ ଠକ ଦେବେ? ଆଚ୍ଛା ହେଉ, ଦେଖାଯାଉ କିଏ ଠକ ପାରୁଛି । ଯିଏ ସତରେ ମୋତେ ଠକ ପାରିବ, ସେହି ମୋ ଝିଅକୁ ବାହା ହେବ । ସେ ସାଧାରଣ ଘରର ପିଲା ହେଉ ବା ରାଜପୁତ୍ର ହେଉ, ସେଥିରେ କିଛି ଯାଏଆସେ ନାହିଁ । କିନ୍ତୁ ଯିଏ ଠକିବାକୁ ଚେଷ୍ଟା କରି ଧରା ପଡ଼ିଯିବ କିମ୍ବା କଥାବାର୍ତ୍ତାରେ ନିର୍ବୁଦ୍ଧିଆ ବୋଲି ମନେ ହେବ, ତାକୁ ଚାବୁକ ମାଡ଼ ଖାଇ ବିଦାୟ ନେବାକୁ ପଡ଼ିବ ।"

ସେ ସହରରେ ଥିଲେ ଜଣେ ବଣିକ । ତାଙ୍କର ତିନି ପୁତ୍ର ଥିଲେ । ଦୁଇ ବଡ଼ପୁଅ ବେଶ୍ ଚାଲାକ ଚତୁର । କିନ୍ତୁ ସାନ ପୁଅକୁ ଯିଏ ଦେଖିବ, ଯିଏ ଭାବିବ ପିଲାଟି ବୋକା ।

ବଡ଼ପୁଅ ବଣିକଙ୍କୁ କହିଲା, "ବାପା, ମୋତେ ଅନୁମତି ଦିଅନ୍ତୁ, ମୁଁ ଯାଇ ଚେଷ୍ଟା କରି ଦେଖେଁ ।"

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ




ବଣିକ କହିଲେ, "ଯିଏ ରାଜକନ୍ୟାଙ୍କୁ ବାହା ହେବ ସେ ତ ଆଉ ସ୍ୱର୍ଗରୁ ଛୁଟି ଆସି ନଥିବ! ତେଣୁ ତୁ ଚେଷ୍ଟା କରି ଦେଖିବାରେ କ୍ଷତି ବା କ'ଣ!"

ବଡ଼ପୁଅ ଉତ୍ସାହିତ ହେଲା। ଭଲ ବେଶଭୂଷା ପିନ୍ଧି, ଲୁଗାପଟାରେ ପୂରା ବୋଝଲେ ଅତର ଢ଼ାଳି, ଦିନେ ସକାଳେ ରାଜପ୍ରାସାଦ ଅଭିମୁଖେ ବାହାରି ପଡ଼ିଲା। ବାଟରେ ଦୁଇ ଚୁରିଜଣଙ୍କୁ ଜଣାଇଦେଲା ଯେ ସେ ରାଜାଙ୍କ ଜୁଆଁଇଁ ହେବାର ସମ୍ଭାବନା ରହିଛି।

ବଡ଼ପୁଅ ଯାଇ ରାଜପ୍ରାସାଦରେ ପହଞ୍ଚିଲା ଓ ପ୍ରହରୀ ପାଖରେ ନିଜ ଉଦ୍ଦେଶ୍ୟ ବ୍ୟକ୍ତ କରିବାରୁ ପ୍ରହରୀ ତାକୁ ରାଜାଙ୍କ ପାଖକୁ ନେଇଗଲା। ପ୍ରାସାଦ ଭିତରେ ପଶିବା ମାତ୍ରେ ତାକୁ ଖୁବ ଡର ଲାଗୁଥାଏ। ତେଣୁ ସେ ନିଜକୁ ସହଜ କରିନେବା ନିମନ୍ତେ ଥରେ ଝରକା ଦେଇ ଉଦ୍ୟାନ ଆଡ଼େ ଅନାଇ କହିଲା, "ଗୋଟାଏ କାଉ!"

"ମୂର୍ଖ! ମୋର ଏଡ଼େ ସୁନ୍ଦର ଉଦ୍ୟାନ ଭିତରେ ମୟୂର, ହରିଣ, ସରୋବରରେ ଖେଳୁଥିବା ହଂସ—ଏସବୁ କିଛି ତୋ ଆଖିରେ ନପଡ଼ି ପଡିଲା ଗୋଟାଏ କାଉ! ଦୂର ହ!" ରାଜା ବିରକ୍ତ ହୋଇ କହିଲେ। ସଙ୍ଗେ ସଙ୍ଗେ ପ୍ରହରୀ ତାକୁ ଟାଣିନେଇ ଯାଇ ଗୋଟାଏ ଧକ୍କା ଦେଇ ବିଦା କରିଦେଲା।

ବଡ଼ଭାଇ ମୁହଁ ଶୁଖାଇ ଘରକୁ ଫେରିବାର ଦେଖି ମଝିଆଭାଇ ବାହାରି ପଡ଼ିଲା। ସେ ବି ବହୁତ ସତର୍କ ଭାବରେ ପ୍ରସ୍ତୁତ ହୋଇ ଯାଇଥାଏ। ତାକୁ ବି ରାଜାଙ୍କ ଆଗରେ ହାଜର କରାଗଲା। କିନ୍ତୁ ସେ ଡରି ଯାଇଥାଏ। ତେଣୁ ଡର ଲୁଚାଇବା ପାଇଁ ସେ ହସିଲା।

"କାହିଁକି ହସିଲୁ?" ରାଜା କଠୋର କଣ୍ଠରେ ପଚାରିଲେ। ସେ କିଛି ଉତ୍ତର ଦେଇ ପାରିଲା ନାହିଁ।

"ଭଗାଅ ଏହାକୁ!" ରାଜା ହୁକୁମ ଦେଲେ।

ପ୍ରହରୀ ତାକୁ ଘୋଷାରି ନେଇଯାଇ ଦୁଇ ଧକ୍କା ପକାଇ କହିଲା, "ରାଜକନ୍ୟାକୁ ବାହା ହେବ ବୋଲି ଆହ୍ଲାଦରେ ହସୁଥିଲା ପରା!"



ମନ୍ତ୍ରୀରାଇ କାନ୍ଦ କାନ୍ଦ ହୋଇ ଫେରିବାର ଦେଖି ସାନରାଇ କହିଲା, "ମୁଁ ଥରେ ଚେଷ୍ଟା କରି ଦେଖେଁ ।"

"ତୁ ଦେଖିବୁ ? ତୋତେ ତୋ ସାଙ୍ଗମାନେ ଥଟ୍ଟା କରି ଗୋଟାଏ ଓଲ୍ଟ ଟୋପି ଦେଇଥିଲେଟି ?" ଦୁଇ ରାଇ ପଚାରିଲେ ।

"ସେହି ଓଲଟୋପି ବ୍ୟବହାର କରି ଦେଖିବ ।" ଏହା କହି ଟୋପିଟି ମୁଣ୍ଡରେ ଥୋଇ ସେ ବାହାରି ପଡ଼ିଲା ।

ବାଟରେ ମାଟି ହାଣ୍ଡି ବିକିବାକୁ ଯାଉଥାଏ ଜଣେ ବୁଢ଼ୀ । ଟୋକା ତାକୁ ପଚାରିଲା, "ତୋ'ଠି ଯେତେ ହାଣ୍ଡି ଅଛି, ତା'ର ଦାମ କେତେ ?"

"ଟଙ୍କାଏ ।" କହିଲା ବୁଢ଼ୀ ।

"ମୁଁ ତୋତେ ଦଶଟଙ୍କା ଦେବି । କିନ୍ତୁ ମୁଁ ଯାହା କହିବି ସେଇଆ କରିବାକୁ ହେବ ।"

ବୁଢ଼ୀ ଖୁସି ହୋଇଗଲା । ତାକୁ କ'ଣ କରିବାକୁ ହେବ, ସେକଥା ଟୋକା ତାକୁ ବୁଝାଇଦେଲା ।

ଦୁହେଁ ଯାଇ ରାଜପ୍ରାସାଦ ଆଗରେ ପହଞ୍ଚିଲେ । ସେତେବେଳେ ସକାଳ ଓ ରାଜା ପ୍ରାସାଦ ଆଗରେ ପଦଚାରଣା କରିବା ବେଳ । ରାଜାଙ୍କଠୁଁ କିଛି ଦୂରରେ ଠିଆ ହୋଇ ଟୋକା ବୁଢ଼ୀକୁ କହିଲା, "ହେଇଟି ବୁଢ଼ୀ, ତୋ ଟୋକେଇରୁ ଗୋଟାଏ ହାଣ୍ଡି ବାହାର କରି ତଳେ ପକାଇ ଛେଚି ଦେ !"

ସଙ୍ଗେ ସଙ୍ଗେ ବୁଢ଼ୀ ସେଇଆ କଲା ।

"ପୁଣି ଗୋଟାଏ ବାହାର କରି ଛେଚ !"

"ବୁଢ଼ୀ ପୁଣି ସେଇଆ କଲା ।

ରାଜା ଆଶ୍ଚର୍ଯ୍ୟ ହୋଇ ସେ ଦୁଇଜଣଙ୍କ ପାଖକୁ ଯାଇ ବୁଢ଼ୀକୁ ପଚାରିଲେ, "କିରେ, ତୁ ସେ ଟୋକା କଥା ମାନି ନୂଆ ହାଣ୍ଡିମାନ ଭାଙ୍ଗୁଛୁ କାହିଁକି ?"

"ଛମ୍, ସେକଥା ତ କହି ପାରିବ ନାହିଁ ।" ବୁଢ଼ୀ ଉତ୍ତର ଦେଲା ।

ରାଜା ଟୋକାକୁ ପଚାରିଲେ, "ତୁ କାହିଁକି ତାକୁ ଏପରି କରିବାକୁ କହୁଛୁ ?"

"ଛମ୍ ! କଥାଟି ଗୋପନ ରଖିବେ । ମୋର ଏ ଟୋପି ଗୋଟାଏ ଯାଦୁ ଟୋପି ।



ଏହାକୁ ମୁଣ୍ଡରେ ଲଗାଇ ଯାହାକୁ ଯାହା କହିବେ ସିଏ ସେଇଆ କରିବ । ବର୍ଷକରେ ଥରେ ମୁଁ ଏହାର ଯାଦୁଶକ୍ତି ପରୀକ୍ଷା କରିଥାଏଁ । ବୁଢ଼ୀକୁ ପାଇ ମୋ ଟୋପିକୁ ପରୀକ୍ଷା କରିନେଲି ।" ଠୋକା ବୁଝାଇଦେଲା ।

ରାଜା କୌତୁହଳୀ ହୋଇ ଟୋପିଟି ନିଜ ମୁଣ୍ଡରେ ଥାପି ବୁଢ଼ୀକୁ କହିଲେ, "ଆଉ ଗୋଟାଏ ହାଣ୍ଡି ଭାଙ୍ଗ !"

ବୁଢ଼ୀ ସଙ୍ଗେ ସଙ୍ଗେ ସେଇଆ କଲା ।

ରାଜା ଠୋକାକୁ କହିଲେ, "ଏ ଟୋପି ମୁଁ କିଣିବ ।" କିନ୍ତୁ ଠୋକା ସହଜରେ ରାଜି ହେଲା ନାହିଁ । ରାଜା ଶହେ ସ୍ୱର୍ଣ୍ଣମୁଦ୍ରା ଦେଇ ଟୋପିଟି କିଣିନେଲେ ।

ପରଦିନ ସେ ଠକାରେ ସୁନ୍ଦର ପୋଷାକ କିଣି ତାକୁ ପିନ୍ଧି ଠୋକା ଆସି ରାଜାଙ୍କୁ ଭେଟି କହିଲା, "ପ୍ରଭୁ ! ଆପଣଙ୍କୁ ଓଲଟୋପି ପିନ୍ଧାଇ ପାରିଲି । ମୁଁ ଯେ ଆପଣଙ୍କୁ ଠକି ପାରେଁ, ଏହା କ'ଣ ତା'ର ଯଥେଷ୍ଟ ପ୍ରମାଣ ନୁହେଁ ?"

ରାଜା ଏହା ଭିତରେ ଜାଣି ଯାଇଥିଲେ ଯେ ସେ ଟୋପିର ମୂଲ୍ୟ କିଛି ନୁହେଁ । ତେବେ ସେ ସଙ୍ଗେ ସଙ୍ଗେ ପରାଜୟ ସ୍ୱୀକାର ନକରି କହିଲେ, "ଥରେ ଠକି ଦେଇ ରାଜକୁମାରୀ ରାଜ୍ୟ, ସବୁ ପାଇଯିବ ବୋଲି ଭାବଛ ? ଯାଅ, ଆଗାମୀ କାଲି ଯଦି ମନ୍ତ୍ରୀକୁ ଆଣି ମୋ ଆଗରେ ହାଜର କରି ପାରିବ, ତେବେ ଯାଇ ହେବ ।"

ଏଣେ ରାଜା ମନ୍ତ୍ରୀଙ୍କ ପାଖକୁ ଖବର ଦେଲେ କି ସେ ଯେମିତି କୌଣସି ମତେ ସେଦିନ ପ୍ରାସାଦକୁ ଆସିବେ ନାହିଁ ।

ସେଦିନ ସକାଳେ ଠୋକା ଗୋଟାଏ ଅଖା ଭିତରେ ପଶି ଗଡ଼ି ଗଡ଼ି ଯାଇ ମନ୍ତ୍ରୀଙ୍କ କୋଠା ଆଗରେ ପହଞ୍ଚିଲା । ସେ ଅଦ୍ଭୁତ ବ୍ୟାପାର ଦେଖି ଦରୁଆନ୍ ମନ୍ତ୍ରୀଙ୍କୁ ଖବର ଦେଲା । ମନ୍ତ୍ରୀ ଆସି ଅଖା ପାଖକୁ ମୁହଁ ନେଇ ପଚାରିଲେ, "କିଏ ତୁମେ ? କଥା କ'ଣ ?"

"ଆଜ୍ଞା ! ମୋତେ ସ୍ୱପ୍ନରେ ଗୋଟିଏ ପରୀ କହିଲା କି ଅଖା ଭିତରେ ପଶି ଅଧକୋଶ ବାଟ ଯିଏ ଗଡ଼ି ଗଡ଼ି ଯାଇ ପାରିବ, ତାକୁ

.ଲୋଭା ଧନର ସନ୍ଧାନ ମିଳିଯିବ । ମୁଁ ଏଠୁ ସୃଷ୍ଟି ଗତ୍ରେ ବାଃ ଗଢ଼ ଗଢ଼ ଗୋଢ଼ଗରେ ଅଧଭୋଗ ହୋଇଯିବ ।" ଏହା ଶୁଣି ଘୋଡ଼ା କହିଲା ଓ ବରଦାନ ଦେଉକୁ ଗଲା । ମନ୍ତ୍ରୀ ତାକୁ ଅନୁସରଣ କଲେ । କିଛି ବାଟ ଯାଇ ଘୋଡ଼ା ରହିଯିବାରୁ ମନ୍ତ୍ରୀ କହିଲେ, "ବାବୁ, ମୋତେ ଏ ଅକ୍ଷାରେ ପଶି ଅଧଭୋଗ ଲଗିବାକୁ ଦିଅ । କାହାକୁ କହିବି ନାହିଁ । ଲୋଭାଧନ ଯଦି ମୋତେ ମିଳେ, ତମକୁ ଅଧା ଦେବି ।"

ଘୋଡ଼ା ବାହାର ଆସିଲା ଓ ମନ୍ତ୍ରୀ ଅକ୍ଷାରେ ପଶିଲେ । ସଙ୍ଗେ ସଙ୍ଗେ ଘୋଡ଼ା ଅକ୍ଷାର ମୁହଁ ବନ୍ଦ କରି ତାକୁ ଟେକି ନେଇ ରାଜାଙ୍କ ଆଗରେ ଥୋଇଦେଲା ଓ ଅକ୍ଷା ମୁହଁ ଖୋଲିଦେଲା ।

ରାଜା ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ମୁଗ୍ଧ ହେଲେ । ତଥାପି କହିଲେ, "ଆଜି ସନ୍ଧ୍ୟାବେଳେ ତମକୁ ଅନ୍ତଃପୁର ଭିତରକୁ ନେଇଯିବି । ଏବେ ରାଜକୁମାରୀ ଯଦି ଚିହ୍ନି ପାରିବ, ତେବେ ତମ ଆଶା ସଫଳ ହେବ ।"

ସନ୍ଧ୍ୟାବେଳେ ରାଜାଙ୍କ ସାଙ୍ଗରେ ଅନ୍ତଃପୁର ଭିତରକୁ ଯାଇ ଘୋଡ଼ା ଦେଖିଲା, ତା'ର ଆଗେ ସାତ । ଅନେକ ସୁନ୍ଦରୀ ଯୁବତୀ ଅତି ସୁନ୍ଦର ବେଶ ହୋଇ ଠିଆ ହୋଇଛନ୍ତି । ସମସ୍ତେ ଏକା ପ୍ରକାର ଅଳଙ୍କାର ପିନ୍ଧିଛନ୍ତି । ଏଥି ରାଜକୁମାରୀ ଜାଣିବା ଅସମ୍ଭବ ।

ଘୋଡ଼ା ପକେଟରେ ଗୋଟାଏ ଚୂଡ଼ା ନେଇ ଯାଇଥିଲା । ତାକୁ ବାହାର କରି ସେଇ ସେହି ଯୁବତୀଦଳ ଆଗେ ଫୋପାଡ଼ି ଦେଲା । କେଇଜଣ ଇତସ୍ତତଃ ପଳାଇଲେ । ଜଣେ କିନ୍ତୁ ଚେତା ହରାଇ ତଳେ ପଡ଼ିଗଲେ । ସଙ୍ଗେ ସଙ୍ଗେ ଅନ୍ୟମାନେ "ଜେମା ! ଜେମା !" କହି ତାଙ୍କ ସେବା କରିବାକୁ ବସିଗଲେ ।

"ସେଇଟି ରାଜକୁମାରୀ !" ଘୋଡ଼ା କହିଲା ।

ରାଜାଙ୍କର ଆଉ କିଛି କହିବାର ନଥିଲା । ଘୋଡ଼ା ସହ ରାଜକୁମାରୀଙ୍କ ବିବାହ ହୋଇଗଲା ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ: ୫୦

ପୁରସ୍କୃତ ପରିଚୟୋକ୍ତି ଏପ୍ରିଲ ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ



Devidas Kasbekar



S. Ganapathy

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଫେବୃଆରି ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

### ଡିସେମ୍ବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଦେଖରେ ମୋ ହାତର ଟିକି କଣ୍ଢେଇ, ଦେଉଛି କେମିତି ମୁଣ୍ଡ ଝୁଲେଇ !
ଦ୍ୱିତୀୟ ଚିତ୍ର : ଦେଖରେ ମୋ ବାପା ଲମ୍ବା ମୁଣ୍ଡିଆ, ଲେଡ଼ା ନାହିଁ ତା'ର ମୁଣ୍ଡ ଲୁଣ୍ଡିଆ !!

ପୁରସ୍କାର ବିଜୟିନୀ : ପ୍ରତିମା ମହାପାତ୍ର, ରାୟଗଡ଼ା।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

### ପ୍ରଶ୍ନମାଳାର ଉତ୍ତର

୧. କାଲିଫର୍ଣ୍ଣିଆରେ। ଦେବଦାରୁ ଜାତୀୟ ଏ ଗଛର ବୟସ ଚାରିହଜାର ଛଅଶହ ବର୍ଷ।
୨. ସମ୍ରାଟ ଅଶୋକଙ୍କ କନ୍ୟା ସଂଘମିତ୍ରା ବୁଦ୍ଧଗୟାର ବୋଧିବୃକ୍ଷର ଗୋଟିଏ ଶାଖା ନେଇ ଶ୍ରୀଲଙ୍କାର ଅନୁରାଧାପୁରରେ ରୋପଣ କରିଥିଲେ। ତାହା ଏପର୍ଯ୍ୟନ୍ତ ଜୀବିତ ରହିଛି।
୩. ମେକ୍ସିକୋର ଓକ୍ସକାଠାରେ। ତମାଳ ଜାତିର ଏହି ବୃକ୍ଷର ପରିଧି ଏକଶହ ଦଶ ଫୁଟ।
୪. ଗୋଟାଏ ଜାତିର ବାଉଁଶ ଗଛ ଦିନକ ଭିତରେ ଛତିଶ ଇଞ୍ଚ ପାଏ ବଢି ପାରନ୍ତି।
୫. ପେନ୍‌ସିଲ୍‌ଭେନିଆର ଜୁନିୟାଟା ନଦୀ ତୀରରେ ଗୋଟିଏ ଗଛ ଶହେ ଏକର ଜମି ମାଡ଼ିଛି।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

# ରାଜୁ ବିନା ବ୍ରଶରେ ପେଣ୍ଟ କରୁଛି

ରାଜୁ ସଦା ବ୍ରଶରେ ପେଣ୍ଟ କରୁଛି ।
ରାଜୁ ପିଲ୍ଟାର ବାଗଯାଗ
କିଛି ନ ଥିଲା ।
ଅବଶ୍ୟ ପେଣ୍ଟ କରିବାକୁ ସେ
ଭଲ ପାଉଥିଲା କିନ୍ତୁ ସବୁବେଳେ
ଟାଙ୍କିଅରୁ ପାଣି ଉଡ଼ି ହୋଇ
ଯାଉଥିଲା, ଚଟାଣରେ ରଙ୍ଗ ଦେସି
ହୋଇ ଯାଉଥିଲା, ତାର ହାତ ଓ
ଜାମାପଟା ଖରାପ ହୋଇଯାଉଥିଲା ।
କେଉଁ 'ମା' ଏ ସବୁ ସହ୍ୟ କରିବେ ?
"ଏଣିକି ଅଉ ପେଣ୍ଟ କରିବାର ଦରକାର
ନାହିଁ" ତାର ମା ତାଙ୍କୁ କହିଦେଲେ ।
ମୋହନ ରାଜୁ ପାଇଁ ଭାରି ଦୁଃଖିତ ହେଲା ।
ସେ ରାଜୁକୁ ତାର ଅଏଲ ପେଷ୍ଟେଲ
ବକ୍ସ ଦେଖେଇଲା ।
ପାଣିର ଦରକାର ନାହିଁ, ବ୍ରଶର ଦରକାର
ନାହିଁ, ପାଣି ଉଡ଼ି ହେବ ନାହିଁ
କି ରଙ୍ଗ ଦେସି ହେବ ନାହିଁ ।
ଭାରି ସୁବିଧା—ବକ୍ସରୁ ପେଷ୍ଟେଲ
କାଢ଼ି ସାଡିଙ୍ଗ ସାଙ୍ଗେ ଡ୍ରଇଙ୍ଗ
କରିହେବ—ଅଉ ରଙ୍ଗ ଯାହା
ଚାହିଁବ, ନାନା ପ୍ରକାରର ।
ପ୍ୟାରଟ ଗ୍ରୀନ, ଲବଷ୍ଟର ଅରେଞ୍ଜ,
ପିକକ ବ୍ଲୁ, ସନଫ୍ଲାଓ୍ବାର ୟେଲୋ
ଓ ଅଉ ଅନେକ ।
ରାଜୁର ମା' ମଧ୍ୟ ତା ପାଇଁ
ଗୋଟିଏ ଅଏଲ ପେଷ୍ଟେଲ ବକ୍ସ
ଆଣି ଦେଇଛନ୍ତି ।

camel
OIL PASTELS

**କ୍ୟାମେଲ**
**ଅଏଲ ପେଷ୍ଟେଲ୍ସ**
୧୨, ୨୪ ଓ
୪୮ ଶେଡରେ ଉପଲବ୍ଧ

କ୍ୟାମଲିନ
ପ୍ରାଇଭେଟ ଲିମିଟେଡ
ଆର୍ଟ ମ୍ୟାଟେରିଆଲ ଡିଭିଜନ
ବମ୍ବେ ୪୦୦ ୦୫୯

କ୍ୟାମଲିନ ଅରଙ୍ଗା
ପେନ୍ସିଲର ନିର୍ମାତାଙ୍କ ପକ୍ଷରୁ

VISION 792 ORI

**Results of Chandamama Camlin Colouring Contest No.33. (Oriya)**

*1st Prize:* Dilip Kumar Satapathy, Dhenkanal. *2nd Prize:* Paramita Mohanti, Bhubaneswar. Shri. Rama Chandna Dalai, Bhubaneswar-12. Michael Rajesh Behera, Bhubaneswar. *3rd Prize:* Gireesh Vasant Chiddarwar, Digras. Miss. Alka Panda, Bhubaneswar. Kumari Sarmistha patnaik, Kharda. Master Anirudha Dash, Dhanbad. Swayan Bikash Panda, Bhubaneswar. Sr. Manojkumar Pradhan, Angel.·Sri Gautam Das, Bhubaneswar. Sri. Manasranjan Nayak, Orissa 756 139. Sri Minaketan Sahu, Balasore.